୩ଯସ୍ମେତ୍ତ ଶ୍ରୁତିମାକଳଯ୍ୟ ମମତରେ ନିର୍ନିନ୍ନ ସାରସ୍ୱିଷା, ମ୍ବଲ୍ଚରୈଃ ପରପ୍ରରସୂନ୍ତ ପରନ୍ତଃ ପ୍ରେତାଃ କ୍ଲୁଶ୍ (ଧା୮)କୋଲ୍କହୃନ୍ ।୯।

ତସ୍ମିନ୍ ପୁରନ୍ଦରପୁସ ତିଲକାୟମାନେ,
୬ଦାନେ ସମୁନ୍ନତମତିସ୍ତନୟସ୍ତଦାସୁଃ ।
୩ସାମ୍ରାଜ୍ୟଭାରବହନୈକ ଧୂର୍ଣ୍ଣବାହୁଃ,
ଶ୍ରୀରାଜରାଜନୃପତି ପୃଥିବୀଂ ଶଶାସ ।୧୦।

ଯତେଦ୍ୟାଦ୍ୟଦ୍‌ବାନ୍ଦବାଜାଖ୍ୟରଶିଖରଭିରର୍ଷ ଶ୍ରୁତିଭୂତଦର୍ପ, ଛ୍ଲୀ ଜାଲାବକାର୍ଣ୍ଣନି ଦଶପୁରମସର (ଧା୯)ଭ୍ରୁଶପଙ୍କେ ବିଲଗ୍ନମ ।
୩ସାରନ୍ନୀଡ଼ାନ୍ତମଜ୍ଜନ୍ତ୍ ସୁରପତିକରଣଂ ବ୍ୟାକୁଲା ଶଙ୍କଭୁତ୍ୟା,
୪ଧୃତ୍ୟା ଲଙ୍କ୍ଲମେକେ କରତଳମପରେ ତୀରମୁଦ୍ବେଲସୃଷ୍ଟ ।୧୧।

ରଣଭୁବ ଯଦ୍ୱ ନିତ୍ୟନ୍ନାଦ୍ଧତଃ ଶତ୍ରୁମାର୍ଥ, ସୁଲତ ଦର୍ଭୁଜେନ କ୍ଷ୍ମାଭୁଜାଽନେନ ନୂନମ୍ ।
କଥମିହଂ ଜଳକାଲେ କଲ୍ପିତାନଲ୍ପ ପାପ,
ପ୍ରଣୟିନ (ଧା ୧୦) ମୂରସ୍ତୃଷ୍ଟିଃ ସ୍ରଷ୍ଟୁରସ୍ୟାଦ୍ଧବ ସ୍ୟାତ୍ ।୧୨।

ତେନୋଢ଼ା ପୁରୁଷୋତ୍ତମେନ ସୁରମାଦେବୀ ତମୈବାର୍ଥତୋ,
ନାମ୍ନାଽନ୍ୟଃପୁରସୁନ୍ଦରୀଜନଶିରୋରତ୍ନାଙ୍କୁର ଶ୍ରୀରସୂମ୍ ।
ପ୍ରତ୍ୟାରୂଢ଼ଂଭୂଳାଂ ପ୍ରିୟେଣ ସହସା ସତ୍ ସ୍ୱର୍ଣ୍ଣଶୈଳଦଦା,
ବେଦୈଃ ଖ୍ୟାତତଭ ଧରାର୍ଥଭିତ୍ଧୋ ଜାତାର୍ଥିନୀ କେବଳଂ ।୧୩।

ସବନ୍ଧ (ଧା୧୧)ରେନ୍ଦ୍ରତିଲକଃ କଳକାଳକଳ୍ପ—
ଶାଖୀ ନୃଖୌଘମଲ୍ଲଭୂସ୍ତ ତରଂ ସ ରାଜା ।
ବୃଦ୍ଧୋଽନୁଜଂ ମନୁରାଜନତାଙ୍ଘ୍ରିଂଯୁଗ୍ମଂ,
ରାଜ୍ୟେଽଭିଷିକ୍ତମକରୋ ନନସୂଙ୍କ ଧାମଂ ।୧୪।

ସ ଶ୍ରୀମାନନସୂଙ୍କଭୀମନୃପତିଃ ସାମ୍ରାଜ୍ୟଲକ୍ଷ୍ମୀପତିଃ ପ୍ରତ୍ୟର୍ଥି କ୍ଷିତିପାଳମୌଳିତିଲକଃ ତ୍ୟକ୍ତାଶ୍ରଦ୍ଧନ୍ୟାଳ (ଧା-୧୨)କଃ ।

ସଂପ୍ରାପୈ୍ୟବ ସମୁଦ୍ର ମୁଦ୍ରିତମହୀଚକ୍ରୀକରାଗ୍ରସ୍ଥିର—
ଝଛନ୍ନଂ ଶଙ୍ଖପରାକ୍ରମଃ ସମକରୋଦ୍‌ବାଙ୍ଗେନ୍ଦ୍ର * ଚନ୍ଦ୍ରଃ କ୍ଷଣାତ୍ ।୧୫।

ତସ୍ମ ହୋଗୀନ୍ଦ୍ର କମାଥ୍‌ଥକର୍ମ୍ମ ଧରଣୀଶ୍ୱରଃ ସଭୁଙ୍କୋ ମହାନ,
କାନାପି ନିକଲଙ୍ଗନାଥ ପଣଧା ଖ୍ୟାତନ୍ନ କାନେ ଶୃଣୁ ।
ଦେବୋଽସ୍ମିନ୍ନପି କପ୍ପୁପ୍ରସ୍ଥାଣରସିକେ ପ୍ରେ (ଧା-୧୩)ଙ୍ଖତ୍ତୁରଙ୍ଗ କ୍ଷୁର—
କ୍ଷୋଦ୍‌ଭୂତ ରଜୋଭରମ୍ବରମଗାଦର୍ଦ୍ଧଂ କ୍ଷମାମଣ୍ଡଳଂ ।୧୬।

ଜାତା ମଙ୍ଗରମାରେନ୍ଧଃ ସ୍ମୃରଦସି ବ୍ୟାଳେନ୍ଦ୍ରବାସ୍ସଭୂଜା—
ମନ୍ଥାଦ୍ରେରସଙ୍ଗାବ ବାଂଛତ ବନ୍ଧୁ ପ୍ରୀତଃ ସଦା ଶ୍ରୀରସ୍ୟଂ ।
ଅସ୍ମିଂନ୍ନେବ ନରାଧିନାଥତିଲକେ ସ୍ଥୈର୍ଯ୍ୟଂ-ଗତା ସତ୍‌ପୁନ
ର୍ଦୀକନ୍ତ୍ୟ କଳାସ୍ୟ ଶାଶ୍ୱତମ୍ (ଧା-୧୪) ମୌ ଜାଗ୍ରଦ୍ୟଶଶ୍ଚନ୍ଦ୍ରମାଃ ।୧୭।

ଉଦ୍ୟଦ୍‌ଦ୍ୱଗବଜସ୍ତାର୍ଥସାଧନବିଧୌ ଗଙ୍ଗାନ୍ୱୟକ୍ଷ୍ମାଭୁଜା—
ଢବ୍ୟାସ୍ତ ଚତୁରଙ୍ଗତୋଽଧିକତରଃ ସେ ନ୍ୟାତ୍ସ ଏକୋଽଭବତ ।
ଶ୍ରୀ ସ୍ୱପ୍ନେଶ୍ୱର ଦେବ ଏବ ବଲସତ୍ ଶସ୍ତ୍ରଷତାଶ୍ୱକର,
କ୍ଷୀଲନ୍ନୈଢବନର୍ଯ୍ୟିତାସ୍ଥମ ମହାମ୍ଭୋଧିର୍ନ୍ନ ସ୍ତାମ୍ଭୋନିଧିଃ ।୧୮।

ଲକ୍ଷ୍ମୀଦେବ୍ୟା ପତିର(ଧା-୧୫)ସୁମଧୋଽନେନ ତନ୍ତେ ବଳଦ୍ୱିଟ୍,
ଗୋପାଳାନ୍ପ୍ରିୟସ୍ୟହ୍ରଦସ୍ୟଂ ସବ୍‌କାବ୍ୟୋଽତ୍ୟୁତୋଽସୌ ।
ବଣ୍ଣକମେନୋ ଧରଣିଶସୁମସ୍ୟାନ୍ଧ୍ରିତା ସେନ ମଗ୍ନା,
(ସୋ)ଽସ୍ମିଞ୍ଜନ୍ମନ୍ୟପି ସ୍ୱଚରିତୈ ରେଷ ବଶ୍ୱନ୍ଧରାଭୂତ୍ ।୧୯।

---

* ମୂଳପାଠରେ 'ଗଙ୍ଗେନ୍ଦ୍ର' ଅଛି । ମାତ୍ର ଶ୍ରୀଯୁକ୍ତ ଚନ୍ଦ୍ରାମଣି ଆଚାର୍ଯ୍ୟଙ୍କ ବହିରେ 'ବଙ୍ଗେନ୍ଦ୍ର' ମୁଦ୍ରିତ ହୋଇଅଛି । ଉ: ସ: ଭ୍ରମ୍ଭ ଭାଗରେ 'ବଙ୍ଗେନ୍ଦ୍ର' ଥିବାରୁ ଏହି ପାଠ କେଉଁଠାରୁ ଆସିଲା ତାହା ଠିକ ବୁଝି ହେଉନାହିଁ । ତେବେ ମନେହୁଏ ଯେ କୌଣସି ବଙ୍ଗୀୟ ଲେଖକଙ୍କ ପାଠରୁ ଏହା ଗୃହୀତ ।

ଯଦ୍ଧାନ ବଗଳଦ୍‌ବାର ମାତୃକା । ଭୂତମାତୃକା;
ଶସ୍ୟ ସମ୍ପତ୍ତିସମ୍ଭାରୈର୍ଦ୍ଧିନିର୍ଦ୍ଧାନା ଭବେନ୍ନଘା । ୨୦ ।

(ଧା ୧୭) କୈଳାସାଦ୍ରି ହିମାଚଳସ୍ତନତଟବ୍ୟାସର୍ଙ୍ଗି ମଦ୍ଧାକମା,
ବାରଣସୀ ଯଦି କାନ୍ତିରମ୍ୟ ତିଲକଂ ଚନ୍ଦ୍ରଂକଳଙ୍କା ଶଯ୍ୟାତ୍ । ଜ୍ୟୋତ୍ସ୍ନାହାସ-
ମୁଖୀ ପୟୋଧିବସନା କୁନ୍ଦଦ୍ୟୁତିଙ୍ନିତ୍ୟଜନ୍ । କ୍ୱାୟଂ ସ୍ୟାଦିହ ଚନ୍ଦ୍ର
ଶେଖରପଦାରୁଢ଼ା ମୃଡ଼ାମୀପତିଃ । ୨୧ ।

ଭକ୍ତ୍ୟଂ ପ୍ରଦ୍ୟୁମ୍ନସ୍ରେନ୍ଦ୍ରବଳସଲ୍ଲୌଳିଷ୍ଟ ରତ୍ନାବ (ଧା୧୭)ଳୀ,
ଛାୟା ଶଙ୍କଧନୁଃସ୍ତରପୃଦଲଙ୍ଗନ୍ନେନ୍ଦ୍ରେଶ୍ୱରମ୍ୟାମୁନା ।
ଅଜନ୍ନତ୍ୟା ପରପଙ୍କଜୋ ବହୁତରଦ୍ରବ୍ୟବ୍ୟୟଂ କୁର୍ବତା
ପ୍ରାସାଦୋ ରଚତଂ ସୁଧାଛବହସଙ୍କୈଳାସଶୈଳେଶ୍ୱରଃ । ୨୨ ।

ସ୍ୱର୍ଗ୍ଗାଦଃ ସ ସୁରାଳୟୋ ହରଶ୍ଚୂରକ୍ଷୁର୍ଣ୍ଣ୍ୟଶ୍ଚ ପୂର୍ବୋଗିର ଏର୍ଦ୍ଧାରୁଣ୍ୟା
ପରତ୍ନନ୍ଦିତୋଃସ୍ତଶିଖରୀ ମାନ୍ୟଃ ସଗୌଶ୍ରୀ (ଧା୧୮) ଗୁରୁଃ ।
ଇତ୍ୟଦ୍ୟାପି ଯଶମୃକ୍ଷନ୍ନବନବସ୍ଥାନଂ ଚଲନ୍ନୁଦ୍ଧରେ
ଲଙ୍କେନ୍ଦ୍ରେଣ ଶିଳୋଚୟଂ ଗୃହମଦଃ ପ୍ରାପ୍ତୋଽନବଦ୍ୟଂ ଶିବଃ । ୨୩ ।

ଇହ ବଜୟିନା ପ୍ରାକାରଶ୍ରୀର୍ମହୋପଲନିର୍ମିତା,
ଜଳଧରଗଣ ରତ୍ନୋନ୍ନତ୍ୟା ନବେନ୍ଦ୍ରମିବୋଦ୍ଧତା ।
କଳଜଳନଧେର୍ମର୍ଯ୍ୟାଦାଳୀ ଭୟାଦିବ ତସ୍ୟବୈ
ଶରଣ (ଧା୧୯) ମବଣ୍ଡଦ୍ଧର୍ମୋ ଯଜ ବିନେନ ସୁରକ୍ଷୟା ।୨୪।

ଯାସୀ ନ୍ନେହାଞ୍ଚଳତରଳମା ବଶ୍ୟବଶ୍ୟୈକମନ୍ତଃ ପାଦନ୍ୟାସସ୍ତ୍ରିଭୁବନ-
ଗତସ୍ତମ୍ଭନଂ ସଂବଧତ୍ତେ । ନୃତ୍ୟାରମ୍ଭେ ବଳୟମଣିଭିର୍ନିର୍ମିତା ଯତ୍ନହାପା-
ସ୍ତସ୍ମୈ ଦତ୍ତାସ୍ତି ପୁରଜୟିନେ ତେନ ତାସ୍ତା ମୃଗାକ୍ଷ୍ୟଃ ।୨୫।

ଉପବନମଥ ଚକ୍ରେ ତେନ ମେଘେଶ୍ୱ (ଧା୨୦)ରସ୍ୟ, ସ୍ଫୁରିତ-
କୁସୁମରେଣୁ ଶ୍ରେଣୀଚନ୍ଦ୍ରାତପଶ୍ରୀଃ । ଅବିରତ ମକରନ୍ଦ-ସ୍ୟନ୍ଦ-ସନ୍ଦୋହ-
ବର୍ଷୈର୍ଦୃତ ରତ୍ନପଙ୍କଲୀଳା ଯନ୍ତ୍ରଧାରା-ଗୃହର୍ଦ୍ଧିମ୍ । ।୨୬।

ବନଶ୍ରୀମୁକ୍ତାସ୍ରଗ୍‌ଦରଦଳଦପୁଷ୍ପୋତ୍କରମିଳତ୍,
ପରାଗୈର୍ଭୃଙ୍ଗାଳୀ କଳିତସିତିମା ଯତ୍ର ଜଗ୍ମିମା ।
ମୁନେଃ ପୁଷ୍ପାସ୍ତସ୍ୟ ସ୍ଫୁଟିତଘଟିତାଖ୍ୟା ବ(ଧା-୨୧)ଳରୟଂ,
ବସନ୍ତୋଦ୍ୟାନନ୍ତନ୍ଦି ପଶ୍ୟୀରପି ନକ୍ଷତ୍ରବତତିଃ ।୨୭।
ଅତ୍ୟଚ୍ଛଂ ଶରଦମ୍ବରାଭ୍ରରସଶଶ୍ୱୈସ୍ୟାଚ ପାପାପହଂ,
ଗମ୍ଭୀରନ୍ନପ୍ରଶାଳନୋଽପି ହୃଦୟାତ୍‌ଶୀତଞ୍ଚ ଚନ୍ଦ୍ରଦ୍ୟୁତେଃ ।
ହୃଦ୍ୟ-ସ୍ୱାଦୁ ସୁଧାର ସାଦପି ସଦୈବାରାନଧେଃ ସୋଦରଂ,
ଟଡନାଖାନ ନରେଶ୍ୱରପ୍ରଣୟିନା ମେଢେଶ୍ୱରସ୍ୟା (ଧା ୨୨୬ ଳପ୍ୟୁଃ ।୨୮।

ଆନନ୍ଦୈକନିକେତନଂ ନୟନୟୋଃଶଶ୍ୱନ୍ମନଃକୈରବ,
ନେତ୍ୟାଚେ୍ଯାଘଃ ଖଲୁ ବିଶ୍ୱକର୍ମନିପୁଣବ୍ୟାପାର ବୈଦଗ୍‌ଧ୍ୟଭୂଃ ।
ଗ୍ରୀଷ୍ମଗ୍ରାମଭସ୍ମାଭିଖ୍ୟାତଜନତା ଶୌଟୀର୍ଯ୍ୟ ଦୂର୍ଗାଳୟେ,
ମାର୍ଗଃ କୀର୍ତ୍ତିବିଜୃମ୍ଭଣସ୍ୟ ଜୟିନା ନେତ୍ରନ୍ମ ତୋ ମଣ୍ଡପଃ ।୨୯।

ଅପାଂ ଶାଳାମାଳାଃ ପଥି ପଥି ତଡ଼ାଗାଃ ପ୍ରତି (୨୩) ପୁରଂ;
ପ୍ରଦୀପାଃ ସମ୍ପୂର୍ଣ୍ଣାଃ ପ୍ରତି ସୁରଗୃହଂ ଯସ୍ୟ ବିମଲାଃ ।
ମଠା ବେଦାଧୀନାଂ ଦ୍ୱିଜପୁରବରାଗାଃ ପ୍ରତିଦିଶଂ,
ବିରାଜନ୍ତେ ସର୍ବାଣ୍ୟପି ଚ ପରିତସ୍ତସ୍ମୈ ନିବଦ୍ଧାଃ ।୩୦।

ଆରାଦ୍‌ବଦ୍ଧପୁରଂ ବୃହଦ୍ଗୃହପୁରସ୍ପର୍ଦ୍ଧିସ୍ଫୁରତ୍‌ରେଃ ସଦା
ଗୃହ୍ୟଂ ବସ୍ତୁମଭସ୍ତ ରଦ୍ଧି ଜବରଗ୍ରାମାପ୍ସୁ ଧର୍ମାତ୍ମନେ ।
ଦତ୍ତଂ ତେନ ମୁଦା ଯଦୋଦ୍ଧତ (ଧା ୨୪) ମଖପ୍ରାରବ୍‌ଧଧୂମଧ୍ୱଜ
ସ୍ଫୁର୍ଜଦ୍ଧୂମଚୟେନ ଯତ୍ର ସକଳବ୍ୟାଳଃ ସମୁତ୍ସାର୍ଯ୍ୟତେ ।୩୧।

ତଂ ପ୍ରତ୍ୟନ୍ତବସୁନ୍ଧରାଜ ପୂଜ୍ୟଃ
ପ୍ରାସାଦମୀଣସ୍ୟ ସନନ୍ଦକଶ୍ରୀଃ ।
ସୁଦର୍ଶନେନାନ୍ୱିତ ଏଷ ବସ୍ତୁ
ରାଜ୍ୟାର୍ଯ୍ୟରାଜଃ ସ ପୃଥଗ୍ ନ ବସ୍ତୋଃ । ୩୨ ।
ଉଦୟନକବସ୍ତୁସ୍ୟାଦେଶାତ୍ ପ୍ରଶସ୍ତିବିଳାସିନୀଂ
ସୁଲଳିତପଦନ୍ୟାସୈଃ ଶଶ୍ୱଦ୍‌ବ (ଧା ୨୫) ଦଗ୍ଧମନୋହରାଂ ।

ଧ୍ୱନଦ୍ଭରନଣଂ କଣ୍ଠେ ଶ୍ରୀ ସ୍ୱାମଲଂକୃତଦ୍ୱାରଣୀ—
ମତ୍ତରପତସ୍ୟା ଶଯ୍ୟାଯାତାଂ ପ୍ରଯାଧିତବାନମାଂ । ୩୩ ।
ଯାବଜ୍ଜ୍ୟୋତ୍ସ୍ନାସୁଧାଂଶୁଂଧରଣିଫଣିପତ୍ତ ଯାଁବଦମ୍ଭୋଜଲକ୍ଷ୍ମୀ
ଯାବଦ୍ଯାବଚ୍ଛ ଗଙ୍ଗାହ୍ୱମଧରଣୀଧରେଗ୍ର ଯାବଦେବାର୍ଣ୍ଣବୋର୍ମୀ ।
ବାଗର୍ଥୋ ଯାବଦସ୍ମିଂଶ୍ଚିରମନୁବସତୋଃଦ୍ୱୈତରୂପେଣ
(ଧା ୬୮) ଲୋକେ ।
ତାବତ୍ ପ୍ରାସାଦ କୀର୍ତ୍ତି ସ୍ତ୍ରିଭୁବନକୁହରେ
ରାଜତାମସ୍ୟ ନତ୍ୟଂ । ୩୪ ।

ଶ୍ରୀ ।
ବନ୍ଦୀଧବଳ ଧୀରତନୟୁ ମ ଚନ୍ଦ୍ରଧବଳଃ ପ୍ରଶସ୍ତିମିହପଟ୍ଟେ ।
ସରଳାକ୍ଷରମାଳାଭିର୍ଲ୍ଲିଲେଖ ମେଘେଶ୍ୱରଦ୍ୱାରେ । ୩୫ ।
ସୂତ୍ରଧାରଃ ଶିବକରଃ ସଦ୍ବୃତ୍ତମକ୍ଷରାବଲୀଂ
ନଚଖାନ ଶିଳପଟ୍ଟେ ମୁକ୍ତାଫଳନରମିହ । ୩୭ ।

ସ୍ୱପ୍ନେଶ୍ୱର ଦେବଙ୍କର ଏହି ଶିଳାଲିପିରେ ଦିନ ମାସ ବର୍ଷର କଥା କିଛି ଲିଖିତ ହୋଇ ନାହିଁ । କିନ୍ତୁ ଶ୍ଳୋକ ସଂଖ୍ୟା ୭-୮ରେ ଗଙ୍ଗ-ବଂଶର ଚୋଡ଼ଗଙ୍ଗ, ରାଜରାଜ ଓ ଅନିୟଙ୍କ ଭୀମ ତିନିଜଣ ରାଜାଙ୍କର କୀର୍ତ୍ତି-କଳାପ ବର୍ଣ୍ଣିତ ହୋଇ ଥିବାରୁ ଶିଳାଲିପିଟିର ସମୟ ନିରୂପଣ କରିବା ପାଇଁ ଅନେକ ପରିମାଣରେ ସହଜ ହୋଇଅଛି । ସ୍ୱପ୍ନେଶ୍ୱରଙ୍କର ଭଗିନୀ ସୁରମା ଦେବୀଙ୍କୁ ରାଜରାଜ ବିବାହ କରିଥିଲେ । ରାଜରାଜ ଖ୍ରୀ: ୧୧୭୦-୯୦ ପର୍ଯ୍ୟନ୍ତ ରାଜତ୍ୱ କରିଥିବାର ପ୍ରମାଣ ମିଳେ । ତାଙ୍କ ଅନ୍ତେ ତାଙ୍କ ସ୍ଥାନ ଲଭି ଅନିୟଙ୍କଭୀମ ଖ୍ରୀ: ୧୧୯୦-୯୮ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏଥିରୁ ପ୍ରମାଣ ହେଉଅଛି ଯେ, ମେଘେଶ୍ୱର ମନ୍ଦିରର ନିର୍ମାଣକାଳ ଖ୍ରୀ: ୧୧୯୦-୯୮ ମଧ୍ୟରେ ପଡ଼ୁଅଛି । ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀର ଶେଷ ଦଶନ୍ଧି । ଲିଙ୍ଗରାଜ ମନ୍ଦିରରେ ଅନିୟଙ୍କଭୀମ ଦେବଙ୍କର ୪ର୍ଥ ଅଙ୍କ ମକର ଶୁକ୍ଳ ଏକାଦଶୀ ଶୁକ୍ରବାରରେ ଲିଖିତ ଲିପିରୁ ଜଣାଯାଏ ଯେ ତାହା ୧୫ ତାରିଖ ଜାନୁଆରୀ ଖ୍ରୀ: ୧୧୯୩ରେ ଲିଖିତ ହୋଇଥିଲା । ଏହାହିଁ ଓଡ଼ିଶାର ଗଙ୍ଗବଂଶୀୟ ରାଜାମାନଙ୍କର ଭୁବନେଶ୍ୱରର ସର୍ବପ୍ରଥମ

ଓଡ଼ିଶା ଶିଳାଲିପି ବୋଲି ମନେ ହେଉଅଛି । ଚୋଡ଼ଗଙ୍ଗ ଓ ତାଙ୍କର ପୁତ୍ର କାମାର୍ଣ୍ଣବ, ରାଘବ ଓ ରାଜରାଜ ମୃତ୍ୟୁପରେ ଓ ଆଉ ଅନଙ୍ଗଭୀମଙ୍କ ପୂର୍ବେ ଭୁବନେଶ୍ୱରରେ ଯେଉଁ ସବୁ କୀର୍ତ୍ତି କରିଥିଲେ ତାହାର କୌଣସି ଲିପି ମିଳି ନାହିଁ । କେବଳ ଅନନ୍ତ ବାସୁଦେବ ଶିଳାଲିପିରେ ଚୋଡ଼ଗଙ୍ଗ ଦେବଙ୍କର ନାମ 'ଗଙ୍ଗସିନ୍ଧୁ' ନମ୍ବର ସମ୍ପର୍କରେ ବର୍ଣ୍ଣିତ ହୋଇ ଥିବାର ଦେଖାଯାଏ । ପ୍ରଶସ୍ତିର ସାରାଂଶ ତଳେ ଦିଆଗଲା:—

ଓଁ ନମଃ ଶିବାୟଃ । ୧ମ ଶ୍ଳୋକରେ ଶିବଙ୍କର ମସ୍ତକରେ ଶୋଭା ପାଉଥିବା ଚନ୍ଦ୍ର ରକ୍ଷା କରିବାର କଥା ବର୍ଣ୍ଣିତ ହୋଇଅଛି । ତତ୍ପରେ ୨ୟ ଶ୍ଳୋକରେ ଅକ୍ଷପାଦ ଗୌତମ ମୁନିଙ୍କ ମହିମା ବର୍ଣ୍ଣିତ ହୋଇଅଛି । ଗୌତମ ମୁନିଙ୍କ ବଂଶରେ ରାଜପୁତ୍ର ହାରଦେବରଙ୍କ ଜନ୍ମ । ହାରଦେବଙ୍କ ପୁତ୍ର ମୂଳଦେବ ଓ ମୂଳଦେବଙ୍କର ପୁତ୍ର କନ୍ୟାମାନଙ୍କ ମଧ୍ୟରେ କନ୍ୟା ସୁରମା ଦେବୀ ଓ ପୁତ୍ର ସ୍ୱପ୍ନେଶ୍ୱରଦେବ ପ୍ରଧାନ (ଶ୍ଳୋ ୩-୭) । ୭ମ ୯ମ ଶ୍ଳୋକରେ ଚୋଡ଼ଗଙ୍ଗ ନାମଧେୟ ଚନ୍ଦ୍ରବଂଶୀୟ ରାଜାଙ୍କର କଥା ବର୍ଣ୍ଣିତ ହୋଇଅଛି । ତାଙ୍କ ଅନ୍ତେ ତାଙ୍କ ପୁତ୍ର ରାଜରାଜ ବିଜୟୀ ହୋଇ ରାଜତ୍ୱ କରିଥିଲେ । ଶ୍ଳୋ (୧୦-୧୨)

ସେ ସୁରମା ଦେବୀଙ୍କୁ ବିବାହ କରିଥିଲେ (ଶ୍ଳୋକ ୧୩) । ଶ୍ଳୋ (୧୪-୧୭)ରେ ରାଜରାଜଙ୍କ ଅନ୍ତେ 'ତ୍ରିକଳିଙ୍ଗନାଥ' ଅନିୟଙ୍କଭୀମ ରାଜା ହୋଇଥିବାର କଥା ବର୍ଣ୍ଣିତ ହୋଇଅଛି । ଶ୍ଳୋ ୧୮-୨୧ରେ ରାଜଶ୍ୟାଳକ ସ୍ୱପ୍ନେଶ୍ୱରଦେବଙ୍କର ବୀରତ୍ୱ ବର୍ଣ୍ଣିତ ହୋଇଅଛି । ଶ୍ଳୋକ ୨୨-୩୨ରେ ସ୍ୱପ୍ନେଶ୍ୱରଙ୍କର ସତ୍କୀର୍ତ୍ତିରାଜି ବର୍ଣ୍ଣିତ ହୋଇଅଛି । ଶ୍ଳୋକ ୨୨-୨୯ରେ ମେଘେଶ୍ୱର ମନ୍ଦିର ନିର୍ମାଣର, ତନ୍ମଧ୍ୟରେ ଦେବଦାସୀ ବ୍ୟବସ୍ଥାର, ତନ୍ନିକଟରେ ଉପବନ ରଚନା, ପୁଷ୍କରିଣୀ ଖନନ ଓ ମଣ୍ଡପ ନିର୍ମାଣର କଥା ବର୍ଣ୍ଣିତ ଅଛି । ୩୦ଶ ଶ୍ଳୋକରେ ବର୍ଣ୍ଣିତ ଅଛି ଯେ ସେ ସଡ଼କ ପାଖରେ ଜଳାଶୟ, ଗ୍ରାମମାନଙ୍କରେ ପୋଖରୀ, ମନ୍ଦିର ଗୁଡ଼ିକରେ ପ୍ରଦୀପ, ଚତୁର୍ଦ୍ଦିଗରେ ବେଦାଧ୍ୟୟନ ପାଇଁ ମଠ, ବ୍ରାହ୍ମଣ ଶାସନ ଓ ବିହାର ପ୍ରଭୃତି ଓ ବନ୍ଧ ପୋଖରୀ ସ୍ଥାପନ କରିଥିଲେ । ସେ ମଧ୍ୟ ବ୍ରହ୍ମେଶ୍ୱର ମନ୍ଦିର ନିକଟରେ ବୃହସ୍ପତି ସମାନ ପଣ୍ଡିତ ବ୍ରାହ୍ମଣମାନଙ୍କ

ସକାଶେ ବ୍ରାହ୍ମଣ ଶାସନଟିଏ ବିଷ୍ଣୁ ନାମା ଜଣେ ନିଷ୍ଠାପର ବ୍ରାହ୍ମଣଙ୍କୁ ଦାନ କରିଥିଲେ (ଶ୍ଳୋକ ୩୧) । ସେହି ବିଷ୍ଣୁ ଆଚାର୍ଯ୍ୟଙ୍କ ଆଦେଶରେ ଏହି ପ୍ରଶସ୍ତି କବି ଉଦୟନ ଚିରକାଳ ସ୍ଥାୟୀ ହେବା ପାଇଁ ରଚନା କରିଥିଲେ । ଶ୍ଳୋ ୩୩-୩୪ ବଣି ଧବଳ ପୁତ୍ର ଚନ୍ଦ୍ର ଧବଳ ଏହି ପ୍ରଶସ୍ତିଟିକୁ ମେଘେଶ୍ୱର ଦ୍ୱାରଦେଶରେ ଖଣ୍ଡିଏ ପଥର ଉପରେ ଲେଖିଥିଲେ (ଶ୍ଳୋକ ୩୫) ଓ ସୂତ୍ରଧାର ଶିବଙ୍କର ମୁକ୍ତାଫଳ ସଦୃଶ ଚିହ୍ନରେ ଅକ୍ଷର ଗୁଡ଼ିକ ଖୋଳିଥିଲେ ।

କବି ଉଦୟନଙ୍କର କବିତ୍ୱ ସମ୍ବନ୍ଧେ କିଲହର୍ଣ୍ଣ ସାହେବ ଲେଖି ଅଛନ୍ତି :—

**The poetry of our auther strikes me as being poor. This poetical conceptions as a rule are of the tritest, and more attertion has been apparently paid by him to the sound of the words than to their exact me ming of effective employment.**

ଶ୍ଳୋକ ଗୁଡ଼ିକରେ 'ସ୍ଫୂର୍ଜିତ' ଓ ସ୍ଫୁରିତ' ଶବ୍ଦର ବ୍ୟବହାର ଦେଖିଲେ କିଲହର୍ଣ୍ଣ ସାହେବଙ୍କର ମତ ସହିତ ସମସ୍ତେ ଏକମତ ହେବେ ।

ସ୍ୱପ୍ନେଶ୍ୱର ଦେବଙ୍କର ପରିଚୟ ମଧ୍ୟରେ ଜଣାଯାଏ ଯେ, ସେ ରାଜପାଳକ ଓ ରାଜାଙ୍କର ପ୍ରଧାନ ସେନାପତି ଥିଲେ । ତାଙ୍କ ନାମରେ କୌଣସି ରାଜୋପାଧି ନାହିଁ । କିନ୍ତୁ ତାଙ୍କର କାର୍ଯ୍ୟଗୁଡ଼ିକ ଅନେକ ରାଜାଙ୍କ କୀର୍ତ୍ତିଠାରୁ ଅଧିକ । ସେ ଯେ କେବଳ ମେଘେଶ୍ୱର ମନ୍ଦିର ତୋଳାଇ ତାହା ପାଖରେ ପୋଖରୀ ଓ ବଗିଚା ଓ ତହିଁରେ ଦେବଦାସୀ ନିଯୋଗ କରିଥିଲେ ଏମନ୍ତ ନୁହେ, ୩୦ ଶ୍ଳୋକରୁ ଜଣାଯାଏ ଯେ, ଦେଶ ତମାମ କୂଅ, ପୋଖରୀ, ବିଦ୍ୟାଳୟ, ମଠ, ବନ୍ଧ ଇତ୍ୟାଦି ଅନେକ ସର୍ବସାଧାରଣଙ୍କର ଉପକାରୀ କୀର୍ତ୍ତି କରିଥିଲେ । ଏଥିରେ କବି କଳ୍ପନା ଥାଇ ପାରେ । ତଥାପି ଏହା ସ୍ୱୀକାର କରିବାକୁ ହେବ ଯେ ସ୍ୱପ୍ନେଶ୍ୱର-

ଦେବଙ୍କ ସଦୃଶ ଜଣେ ବୀର ପୁରୁଷ, ଦାତା ଓ ଜନସାଧାରଣଙ୍କର ମହଦୁପକାରୀ ପୁରୁଷ, ଓଡ଼ିଶା ଇତିହାସରେ ବିରଳ ।

୧୭ଶ ଶ୍ଳୋକରେ 'ତ୍ରିକଳିଙ୍ଗ ନାଥ' ଶବ୍ଦର ବିଶଦ ଅର୍ଥ 'ବ୍ରହ୍ମେଶ୍ୱର ଶିଳାଲିପି' ପ୍ରବନ୍ଧରେ ଆଲୋଚିତ ହେବ ।

## ୩ । ବ୍ରହ୍ମେଶ୍ୱର ଶିଳାଲିପି

ଏହି ଶିଳାଲିପିଟି ପ୍ରଥମେ ୧୮୩୮ରେ ବଙ୍ଗୀୟ ଏସିଆଟିକ୍ ସୋସାଇଟି ପତ୍ରିକାରେ ମୁଦ୍ରିତ ହୋଇଥିଲା । ଏସିଆଟିକ୍ ସୋସାଇଟିର ସମ୍ପାଦକ ପ୍ରିନସେପ ସାହେବ ଏହି ଲିପିର ସମ୍ପାଦନା କରିଥିଲେ ଓ ଏଥି ସହିତ ଲିପି ଫଳକର ସମ୍ପୂର୍ଣ୍ଣ ଛାପା ମଧ୍ୟ ମୁଦ୍ରିତ କରିଥିଲେ । ପ୍ରିନସେପ ସାହେବ ଏହି ଲିପିଟିର ସମ୍ପାଦନ ପାଇଁ ପଣ୍ଡିତ କମଳାକାନ୍ତ ବିଦ୍ୟାଲଙ୍କାରଙ୍କ ଲିପି ପାଠ ଉପରେ ସମ୍ପୂର୍ଣ୍ଣ ନିର୍ଭର କରିଥିଲେ । ତତ୍ପରେ ୧୮[illegible]ରେ ରାଜେନ୍ଦ୍ରଲାଲ ମିତ୍ର ତାଙ୍କର "ଏଣ୍ଟିକ୍ୱିଟିଜ ଅଫ୍ ଓଡ଼ିଶା" ପୁସ୍ତକର ୨ୟ ଭାଗରେ ୧୮୩୮ରେ ମୁଦ୍ରିତ ବ୍ରହ୍ମେଶ୍ୱର ଶିଳାଲିପି ପାଠର ମୁଦ୍ରଣ କରିଥିଲେ । ଓଡ଼ିଆ ଅକ୍ଷରରେ ବ୍ରହ୍ମେଶ୍ୱର ଲିପିର ଏହି ପାଠ ଶ୍ରୀଯୁକ୍ତ ଚନ୍ଦ୍ରମଣି ଆଚାର୍ଯ୍ୟ ମହାଶୟ ତାଙ୍କର 'ଭୁବନେଶ୍ୱର' ବହିରେ ମୁଦ୍ରିତ କରିଥିଲେ ଓ ଶ୍ରୀଯୁକ୍ତ ରତ୍ନାକର ଗରବଡ଼ୁ ଖଣ୍ଡିଏ କ୍ଷୁଦ୍ର ପୁସ୍ତକାକାରରେ ମଧ୍ୟ ଛପାଇଥିଲେ ।

ବ୍ରହ୍ମେଶ୍ୱର ଶିଳାଲିପିଟି କଲିକତାର ଏସିଆଟିକ ସୋସାଇଟିରୁ ୧୮୩୭ରେ ଭୁବନେଶ୍ୱରକୁ ପ୍ରେରିତ ହୋଇ ଥିଲେ ମଧ୍ୟ ଭୁବନେଶ୍ୱରରେ ତାହାର ପତ୍ତା ମିଳୁ ନାହିଁ । ଲିପିର ମୂଳ ଶିଳାଫଳକ ନଷ୍ଟ ହୋଇଥିବାରୁ ପ୍ରିନ୍ସେପ ସାହେବଙ୍କ ଦ୍ୱାରା ମୁଦ୍ରିତ ଛାପାଟି ମୂଳ ଶିଳାଫଳକର ଅଭାବ ପୂରଣ କରୁଅଛି । ମୁଦ୍ରିତ ପାଠ ଓ ଶିଳାଲିପିର ପାଠସହିତ ବହୁ ପ୍ରଭେଦ ଲକ୍ଷିତ ହେବାରୁ ମୁଁ ବହୁ ବର୍ଷ ପୂର୍ବେ ଏହାର ଏକ ସଂଶୋଧିତ ପାଠ ପ୍ରସ୍ତୁତ କରି କଲିକତାର ଏସିଆଟିକ ସୋସାଇଟି ପତ୍ରିକାରେ ଖଣ୍ଡିଏ

ପ୍ରବନ୍ଧ ଲେଖିଥିଲି । ଏହି ପ୍ରବନ୍ଧଟି ଉକ୍ତ ପତ୍ରିକାରେ ଛପାଇବା ପାଇଁ ବହୁ ଆଲୋଚନା ହୋଇଥିଲା ଓ ଶେଷରେ ମୋର ବନ୍ଧୁ ଡାକ୍ତର ଯୋଗେଶ ଚନ୍ଦ୍ର ମଜୁମଦାର ସେହି ପ୍ରବନ୍ଧଟିର ସମ୍ପାଦନ ଓ ପରିବର୍ତ୍ତନର ଭାର ନେଇଥିଲେ । ମୋ ସହିତ ଯେଉଁସବୁ ସ୍ଥଳରେ ଏକମତ ହୋଇ ନ ଥିଲେ, ସେ ସବୁ ସ୍ଥଳରେ ପାଦଟୀକାରେ ତାଙ୍କର ମତ ଦେବାର ସ୍ଥିରୀକୃତ ହୋଇଥିଲା ଓ ଶେଷରେ ୧୯୪୭ରେ ପ୍ରକାଶିତ ପତ୍ରିକାର ୧୩ଶ ଭାଗରେ ମୋର ପ୍ରବନ୍ଧ ମୁଦ୍ରିତ ହୋଇଥିଲା । •

ପ୍ରିନସେପ ସାହେବ ଲେଖିଛନ୍ତି—

"Although, as it will be seen, the slab was in a state of considerable mutilation; yet from the inscription being in verse, my Pandit Kamalakanta Vidyalankara has been able by study of the context to fill up all the gaps with, as he says, hardly a posssibility of error, and indeed where the out line of the letters is preserved I have found his restoration quite conformable".

(ଛପାରୁ) ଦେଖାଯାଏ ଯେ, ଫଳକଟି ଭାଙ୍ଗି ଖଣ୍ଡ ବିଖଣ୍ଡ ହୋଇ ଅଛି ଓ ଲେଖା ସବୁ ଅଦୃଶ୍ୟାକାର ହୋଇଅଛି । ତଥାପି ଲିପିଟି ଶ୍ଳୋକରେ ରଚିତ ହୋଇ ଥିବାରୁ ପଣ୍ଡିତ କମଳାକାନ୍ତ ବିଦ୍ୟାଳଙ୍କାର ଅକ୍ଷର ନଥିବା ଅଂଶର ପାଦ ପୂରଣ କରିବା ପାଇଁ ସକ୍ଷମ ହୋଇଅଛନ୍ତି । ତାଙ୍କ ମତରେ ଏହି ପାଦ ପୂରଣରେ ପ୍ରାୟ ଭ୍ରମ ନାହିଁ । ଯେଉଁଠାରେ ଅକ୍ଷର ଗୁଡ଼ିକ ସାମାନ୍ୟ ଭାବରେ ଦେଖା ଯାଉଅଛି, ମୁଁ ପରୀକ୍ଷା କରି ଦେଖିଛି ଯେ, ସେଠାରେ ତାଙ୍କର ପାଠ ଲେଖା ଅନୁଯାୟୀ ହୋଇଅଛି ।

ପଣ୍ଡିତ ବିଦ୍ୟାଳଙ୍କାରଙ୍କର ପାଠରେ ଭାଙ୍ଗି ଯାଇଥିବା ଲିପିର ପାଠାଂଶ ଶୃଙ୍ଖଳିତ ହୋଇ ନାହିଁ ଓ ତାହା ବ୍ୟତୀତ ଯେଉଁଠାରେ ଅକ୍ଷର ଗୁଡ଼ିକ ଅସ୍ପଷ୍ଟଭାବରେ ଦେଖା ଯାଇଅଛି, ସେଠାରେ କେତେଗୋଟି ସ୍ଥାନରେ ବହୁ ଆନୁମାନିକ ପାଠ ଦେଇ ଥିବାର ମଧ୍ୟ ଦେଖାଯାଇଅଛି । ଛପାରେ

ଦେଖା ଯାଇଥିବା ଅକ୍ଷର ମାଧ୍ୟମରେ ବିଦ୍ୟାଳଙ୍କାରଙ୍କର ପାଠରେ କେତେକ ସ୍ଥଳରେ ନୂତନ ପାଠ ଦିଆଯାଇଛି ଓ ଯେଉଁଠାରେ ଛାପାରେ ଅକ୍ଷରଗୁଡ଼ିକ ଅସ୍ପଷ୍ଟ ଦେଖାଯାଉଛି, ସେଠାରେ ତାଙ୍କର ପାଠ ଗୃହୀତ ହୋଇଛି, କାରଣ ସେ ମୂଳଶିଳାଫଳକଟି ଦେଖିବାର ସୁବିଧା ପାଇଥିଲେ । ଛାପାରେ ଯାହା ଅସ୍ପଷ୍ଟ ହୋଇଛି ତାହା ହୁଏତ ଶିଳାଫଳକରେ ସ୍ପଷ୍ଟ ଦେଖାଯାଇ ଥିଲା ।

ତଳେ ପରିବର୍ତ୍ତିତ ପାଠର ଆଲୋଚନା କରାଯାଉଛି । (୧) ତୃତୀୟ ଧାଡ଼ିରେ ଦ୍ୱିତୀୟ ଶ୍ଳୋକରେ ବିଦ୍ୟାଳଙ୍କାର ପାଠ କରିଥିଲେ 'ସମ୍ରାଟ ଉଭଁର ରାଜକମ୍ର ରମଣୀ', ମାତ୍ର ଛାପାରେ 'ଭଟାଶରାଜରମଣୀ' ସ୍ପଷ୍ଟ ଦେଖାଯାଉଅଛି । ପଣ୍ଡିତ ବିଦ୍ୟାଳଙ୍କାର 'ରାଜ' ଓ 'ରମଣୀ' ଶବ୍ଦଦ୍ୱୟ ମଧ୍ୟରେ 'କମ୍ର' ଶବ୍ଦ ବ୍ୟବହାର କରିଥିଲେ । କିନ୍ତୁ ଶ୍ଳୋକର ୧ମ ପାଦ "......ଭଟାଶ-ରାଜ-ରମଣୀ-ସୀମାନ୍ତ-ବିଭ୍ରାନ୍ତିହୃଦ"ରେ ଛନ୍ଦପାଇଁ ଗୋଟିଏ ଅକ୍ଷରର ଅଭାବ ପଡ଼ୁଛି ଓ ଏହିଠାରେ ମୁଁ "ଭସ୍ୟାନ୍ତେଷୁ"ର ପାଠ ଦେଇଅଛି । ଏହାଦ୍ୱାରା ପ୍ରଥମ ପାଦର ଅର୍ଥ ସହଜରେ ବୁଝା ଯାଉଛି । ଏହି ଲିପିର ୧୨ ଧାଡ଼ିର କାର୍ତ୍ତିକ ଶବ୍ଦର 'ର୍ତ୍ତି' ଅକ୍ଷରର 'ଭଟାଶ' ଶବ୍ଦର 'ଟ' ଅକ୍ଷରର ଆକାରଠାରୁ ଭିନ୍ନ ଓ ୧୧ ଧାଡ଼ିର 'ଘଟା' ଶବ୍ଦର 'ଟ' ଅକ୍ଷର ସହିତ ଏକ ଥିବାର ଦେଖାଯାଏ । ଏହି ପରୀକ୍ଷା ଦ୍ୱାରା ମୋର ପାଠରେ ଅକ୍ଷର ଗୁଡ଼ିକର ପଢ଼ିବାରେ ଭ୍ରମ ନାହିଁ । ପୁନଶ୍ଚ ୪ ଧାଡ଼ିର ୩ୟ ଶ୍ଳୋକର ୪ର୍ଥ ପାଦରେ ମୁଁ ପାଠ ଦେଇଅଛି । "ଯଯାତିର=ଅଭବଦ୍=ଯୋ" । ଏହିଠାରେ ବିଦ୍ୟାଳଙ୍କାର ପାଠ ଥିଲା "ଯଯାତି=ନୃପବଦ୍=ଯୋ" । ଏହି ନୂତନ ପାଠ ଦ୍ୱାରା ନରସିଂହପୁରର ଉଦ୍ୟୋତ କେଶରୀଙ୍କର ତମ୍ବା ପଟ୍ଟାରେ ଥିବା ତଳୋକ୍ତ ଶ୍ଳୋକର ବିଷୟ ସହିତ ପୂର୍ଣ୍ଣ ଏକତ୍ୱ ଥିବାର ମଧ୍ୟ ଦେଖାଯାଇଅଛି ।

ରାଜା ଭୂଜନମେକର୍ଯ୍ୟୋଽଥ
ନୃପତିର୍ଜାତୋ ଯଯାତିସ୍ତତଃ ।
ଶ୍ରୀମାନ୍ ଧର୍ମରଥୋଽଭବତ୍ତଦନୁ ଚ
କ୍ଷ୍ମାଚକ୍ରଚୂଡ଼ାମଣିଃ ॥

୫ ଧାଡ଼ିର ୪ର୍ଥ ଶ୍ଳୋକର ଶେଷ ଦୁଇ ପାଦରେ ବିଦ୍ୟାଲଙ୍କାରଙ୍କ ପାଠ 'ସଦା ସ୍ୱ'ର ପାଠ ଗୃହୀତ ହୋଇଛି, କିନ୍ତୁ ତାଙ୍କର ପାଠ 'ସର୍ଘରବୋ' ରୂପାରେ ଦେଖାଯାଏ ନାହିଁ । ସେଠାରେ 'ସ୍ୱ×ଭଥୋ' ପାଠ ସ୍ପଷ୍ଟ । ନରସିଂହପୁର ତମ୍ବାପଟାର ପାଠ ଅନୁସାରେ ମୁଁ ଯେଉଁଠାରେ 'ଶ୍ରମରଥୋ' ପାଠ ଦେଇଅଛି । ଏଣୁ ଏ ପାଠରେ କିଛି ସନ୍ଦେହ କରିବାର ନାହିଁ ।

୬ ଧାଡ଼ିରେ ୫ମ ଶ୍ଳୋକରେ ବିଦ୍ୟାଲଙ୍କାର ପଢ଼ିଥିଲେ "ରାଜା ବିଭୂବ କବ ଧର୍ମ ପରୋଽପକାରଃ" ଏହି ଧାଡ଼ିରେ ଦୁଇଟି ଅକ୍ଷର ନଷ୍ଟ ହୋଇଛି ଓ ଆଉ ଆଠଟି ଅକ୍ଷର ଅସ୍ପଷ୍ଟ ହୋଇଛି । ନଷ୍ଟ ଓ ଅସ୍ପଷ୍ଟ ଅକ୍ଷର ସ୍ଥଳରେ ମୁଁ 'ବ ଭୂ' (ବକ ସ୍ଥଳରେ) ଓ 'ଧର୍ମୌରଥୋ ପ୍ରଖ୍ୟାତ' ପାଠ ଦେଇଅଛି । 'କବ' ସ୍ଥଳରେ 'ଭୁବ' ପାଠରେ ଅର୍ଥ ଭଲ ହେଉଛି ଓ ନରସିଂହପୁର ତମ୍ବାପଟା ଅନୁସାରେ 'ଧର୍ମରଥ' ପାଠ ଗୃହୀତ ହେବାରେ ବାଧା ନାହିଁ । ତେବେ 'ପ୍ରଖ୍ୟାତ' ଶବ୍ଦର ପାଠ ସମ୍ବନ୍ଧରେ ମୋର ସନ୍ଦେହ ଅଛି । ଡ଼ାକ୍ତର ଦୀନେଶଚନ୍ଦ୍ର ସରକାର ଏହିଠାରେ 'ଗମ୍ଭୀର' ଥିବାର ଅନୁସନ୍ଧାନ କରନ୍ତି ।

୯ ଧାଡ଼ିର ୮ମ ଶ୍ଳୋକରେ ଶେଷ ଶବ୍ଦର ପାଠ ଥିଲା 'ନନ୍ଦନଃ' ମୁଁ ସେଠାରେ 'ବର୍ଦ୍ଧିତଃ' ପାଠ ଦେଇଛି । କାରଣ 'ତ' ଅକ୍ଷର ସ୍ପଷ୍ଟ ଦେଖା ଯାଉଛି ।

୧୦ ଧାଡ଼ିର ଶ୍ଳୋକରେ ବିଦ୍ୟାଲଙ୍କାର ପଢ଼ିଥିଲେ 'ସିଂହଳଂ ଗୌଡ଼ଗୌଡ଼ୌ' ରୂପାରେ ସ୍ପଷ୍ଟ ଅଛି 'ଡାହଳଂ ଓଡ୍ରଗୌଡ଼ୌ' । ଏଠାରେ ଓଡ୍ର ଶବ୍ଦର 'ଡ୍ର' ଅକ୍ଷର ୩୨ ଧାଡ଼ିର 'ଡ୍ର' ଅକ୍ଷର ସହିତ ସମାନ ଅଛି । ଡାହାଳ, ଓଡ୍ର ଓ ଗୌଡ଼ ଦେଶ ଗୁଡ଼ିକ ପରସ୍ପର ନିକଟବର୍ତ୍ତୀ ଓ ଦକ୍ଷିଣ କୋଶଳ ଦେଶର ମଧ୍ୟ ପାଶ୍ୱବର୍ତ୍ତୀ । ମାତ୍ର 'ସିଂହଳଂ ଗୌଡ଼ଗୌଡ଼ୌ' ପାଠରେ କୌଣସି ଭୌଗଳିକ ସମ୍ପର୍କ ନାହିଁ ।

୧୭ ଧାଡ଼ିର ୧୫ଶ ଶ୍ଳୋକର ଶେଷ ପାଦରେ ବିଦ୍ୟାଲଙ୍କାର ପଢ଼ିଥିଲେ 'ଚଞ୍ଚଳଖଞ୍ଜନାଭନୟନା' । ମାତ୍ର ରୂପରେ 'ଖଞ୍ଜନାଭ'

ଶବ୍ଦର ଅକ୍ଷର ନାହିଁ । ସେଠାରେ 'କର୍ଣ୍ଣନାଦ' ଶବ୍ଦର ଅକ୍ଷର ଗୁଡ଼ିକ ଅଛି । କର୍ଣ୍ଣନାଦ ରକ୍ଷ ଶବ୍ଦର ଅର୍ଥ କର୍ଣ୍ଣ ପର୍ଯ୍ୟନ୍ତ ବିସ୍ତୃତ ଚକ୍ଷୁ । ମାତ୍ର 'ଖଞ୍ଜନାଭ' ଚକ୍ଷୁ ଶବ୍ଦର ଅର୍ଥ ଖଞ୍ଜନ ପକ୍ଷୀର ଆଭାପରି ଆଭା ବା କୃଷ୍ଣ ଚକ୍ଷୁ । କେବଳ ଖଞ୍ଜନସୂଚନା ହୋଇଥିଲେ ଦୀର୍ଘାସୂଚକ ଚକ୍ଷୁର ଅର୍ଥ ହୁଅନ୍ତା, ଯାହା ହେଉ ଏହି ପାଠରେ କୌଣସି ଐତିହାସିକ ବା ଭୌଗୋଳିକ ବିଷୟ ପରିବର୍ତ୍ତିତ ହୋଇ ନାହିଁ ।

୨୧ ଧାଡ଼ିର ଗଦ୍ୟାଂଶରେ ବିଦ୍ୟାଳଙ୍କାର ପାଠ କରିଥିଲେ "ସୋମବଂଶୋଦ୍ଭବ ଭୂପତି" । ମାତ୍ର ଏହା ସ୍ଥାପାରେ ଅଛି "ସୋମ × × × × ତ୍ରିକଳିଙ୍ଗାଧିପତି" । ସୋମବଂଶୀ ତାମ୍ରପଟ୍ଟାରେ ସୋମକୁଳତିଳକ ତ୍ରିକଳିଙ୍ଗ ଅଧିପତି ବିରୁଦରେ ବହୁ ବ୍ୟବହାର ଥିବାରୁ ମୁଁ 'କୁଳତିଳକ'ର ପାଠ ଲଗାଇ ଅଛି । ବିଦ୍ୟାଳଙ୍କାରଙ୍କର ପାଠ 'ସୂତ୍ରଧର ରାମ' ସ୍ଥଳରେ 'ସୂତ୍ରଧର ରାମେଣ ଉତ୍କୀର୍ଣ୍ଣଂ'ର ପାଠ ମୁଁ ଦେଇଅଛି ।

ଉପର ଲିଖିତ ପରିବର୍ତ୍ତିତ ପାଠରୁ ଜଣାଯାଉଅଛି ଯେ, ଡାକ୍ତର ଦେବଦତ୍ତ ରାମକୃଷ୍ଣ ଭଣ୍ଡାରକରଙ୍କ ଉକ୍ତି ମତ ଅତି ସମୀଚୀନ ହୋଇଥିଲା ।

Scme more kings of this dynssty seem to be mentioned in No 1572, (The Brahmeswar temple inscription) but this inscription requires it for geneological purposes. (Vide List of inscriptions in Nothern India)

ଅର୍ଥାତ୍ "ବ୍ରହ୍ମେଶ୍ୱର ମନ୍ଦିରର ଶିଳାଲିପିରେ (ସୋମବଂଶୀୟ) ଆହୁରି କେତେଜଣଙ୍କର ନାମ ମିଳେ । ମାତ୍ର ଏହି ଶିଳାଲିପିଟି ସନ୍ଦର ମିଳିତ ସମ୍ପାଦିତ ନ ହେବାଯାଏ ଏହି ଲିପିଟିକୁ ବଂଶାବଳୀ ଗଠନରେ ବ୍ୟବହାର କରାଯାଇ ପାରିବ ନାହିଁ ।"

ବ୍ରହ୍ମେଶ୍ୱର ଶିଳାଲିପିରେ ବର୍ଣ୍ଣିତ ବିଷୟ

ଏହି ଶିଳାଲିପିଟିରେ ୨୦ ଧାଡ଼ି ଲେଖା ଅଛି ଓ ୧୭ଟି ଶ୍ଳୋକ ଅଛି । ଶେଷ ଧାଡ଼ିଟି ଗଦ୍ୟରେ ଲିଖିତ ।

ଏହାର ପ୍ରଥମ ଶ୍ଳୋକରେ ବର୍ଣ୍ଣିତ ଅଛି ଯେ, ସୋମ ବା ଚନ୍ଦ୍ର ଓ ଲକ୍ଷ୍ମୀ ସମୁଦ୍ରମନ୍ଥନରୁ ଜାତ ହୋଇଥିଲେ । ସୋମବଂଶରେ "ଜନମେଜୟ" ଜନ୍ମିଥିଲେ । ସେ ତ୍ରିକଳିଙ୍ଗ ରାଜ୍ୟ ଅଧିପ ଥିଲେ ଓ ଓଡ୍ର ରାଜ୍ୟର ରାଜାଙ୍କୁ ଯୁଦ୍ଧରେ ହତ୍ୟାକରି ଓଡ୍ରଦେଶ ଜୟ କରିଥିଲେ । (ଶ୍ଳୋକ ୨) । ତତ୍ପରେ ତାଙ୍କ ପୁତ୍ର 'ଯଯାତି' ସମସ୍ତ ରାଜଶକ୍ତି ବଳରେ ରାଜା ହୋଇଥିଲେ । (ଶ୍ଳୋକ ୩); ତତ୍ପରେ ତାଙ୍କ ପୁତ୍ର ବହୁ ଗୁଣାବଳୀ ଭୂଷିତ 'ଭୀମରଥ' ରାଜା ହୋଇଥିଲେ (ଶ୍ଳୋକ ୪) ତାଙ୍କ ପୁତ୍ରଙ୍କ ନାମ 'ଧର୍ମରଥ' (ଶ୍ଳୋକ ୫) ସେ ଅପୁତ୍ରିକ ହୋଇ ମରିଥିଲେ ଓ ତାଙ୍କ ରାଜ୍ୟ ନାନା ଶତ୍ରୁଙ୍କ ଦ୍ୱାରା ବିଧ୍ୱସ୍ତ ହୋଇଥିଲା । ଶ୍ଳୋକ (୬) । ତତ୍ପରେ 'ଚଣ୍ଡୀହର' ଅମାତ୍ୟବୃନ୍ଦଙ୍କ ଦ୍ୱାରା ରାଜସିଂହାସନ ଅଧିକାର କରିଥିଲେ । ଚଣ୍ଡୀହରଙ୍କ ପିତାଙ୍କ ନାମ ଅଭିମନ୍ୟୁ ଓ ପିତାମହଙ୍କ ନାମ ବିଚିତ୍ରବୀର ଓ ଓ ପ୍ରପିତାମହଙ୍କ ନାମ ଜନମେଜୟ (ଶ୍ଳୋକ୭) ଚଣ୍ଡୀହରଙ୍କ ରାଜତ୍ୱରେ ଅନେକ ଘଟଣା ଘଟିଥିଲା ଶ୍ଳୋକ୮) ତାଙ୍କ ପୁତ୍ର ଉଦ୍ୟୋତକେଶରୀ ଜଣେ ପ୍ରବଳ ପରାକ୍ରାନ୍ତ ରାଜା ଥିଲେ । (ଶ୍ଳୋକ ୯) । ସେ ଡାହଳ ଓଡ୍ର ଓ ଗୌଡ଼ ଦେଶର ରାଜାମାନଙ୍କୁ ପରାଭୂତ କରିଥିଲେ (ଶ୍ଳୋକ ୧୦) । ତାଙ୍କର ମାତା କୋଳାବତୀ ଦେବୀ ଜଣେ ଧର୍ମପରାୟଣା ନାରୀ ଥିଲେ (ଶ୍ଳୋକ ୧୧) ସେ ଏକାମ୍ର କ୍ଷେତ୍ରରେ ବ୍ରହ୍ମେଶ୍ୱର ଶିବଲିଙ୍ଗପାଇଁ ଏକ ମନ୍ଦିର ନିର୍ମାଣ କରିଥିଲେ (ଶ୍ଳୋ ୧୨) ଏହି ଶିବଲିଙ୍ଗଙ୍କୁ ନିଜେ ବ୍ରହ୍ମା ପୂଜା କରିଥିଲେ (ଶ୍ଳୋକ ୧୩) ସେ ମନ୍ଦିରରେ ଦେବଦାସୀ ନିଯୁକ୍ତ କରିଥିଲେ (ଶ୍ଳୋକ ୧୫ ମନ୍ଦିର ନିର୍ମାତାଙ୍କର ପ୍ରଶସ୍ତି ବେଦ, ବ୍ୟାକରଣ ଅର୍ଥ ଶାସ୍ତ୍ର, କବିତା ଓ ତର୍କାଦି ବିଦ୍ୟାର ପଣ୍ଡିତ ଭଟ୍ଟ ପୁରୁଷୋତ୍ତମ ରଚନା କରିଥିଲେ (ଶ୍ଳୋକ ୧୬) ପରମ ମାହେଶ୍ୱର ମହାରାଜାଧିରାଜ ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ଶ୍ରୀମଦ୍‌ଉଦ୍ୟୋତ-କେଶରୀ ରାଜଦେବଙ୍କର ବିଜୟ ରାଜ୍ୟ ସମ୍ବତ୍ ୧୮ ଫାଲଗୁନ ଶୁକ୍ଳପକ୍ଷ ତୃତୀୟାରେ ସୂତ୍ରଧାର ବାପୁଙ୍କ ଦ୍ୱାରା ଏହି ଲିପି ଲିଖିତ ହୋଇଥିଲା ।

ଭୁବନେଶ୍ୱର ଶିଳାଲିପିର ୨ୟଠାରୁ ୧୦ମ ଶ୍ଳୋକରେ କୋଶଳ ଓ ଉତ୍କଳର ସୋମକୁଳୀ କେଶରୀ ବଂଶୀୟ ରାଜାମାନଙ୍କର ବଂଶାବଳୀ ବର୍ଣ୍ଣିତ ହୋଇଅଛି । ନରସିଂହପୁରର ବାଲିଝଣ୍ଡା ଗ୍ରାମରୁ ପ୍ରାପ୍ତ ମହାରାଜାଧିରାଜ ଉଦ୍ୟୋତ କେଶରୀଙ୍କର ତମ୍ବାପଟ୍ଟାରେ ବର୍ଣ୍ଣିତ ବଂଶାବଳୀ ଅଂଶ ତଳେ ଲେଖା ଯାଇଅଛି । ବାଲିଝଣ୍ଡର ତମ୍ବାପଟା ଭୁବନେଶ୍ୱର ଲିପିର ନଷ୍ଟାକ୍ଷର-ଗୁଡ଼ିକ ଉଦ୍ଧାର କରିବାରେ ବିଶେଷ ଭାବରେ ସାହାଯ୍ୟ କରିଅଛି ।

ବାଲିଝଣ୍ଡର ତମ୍ବାପଟ୍ଟାର ପ୍ରଥମ ଶ୍ଳୋକରେ ଚନ୍ଦ୍ରଙ୍କର ସ୍ତୁତି କରାଯାଇଛି । ୨ୟ ଶ୍ଳୋକରେ ଚନ୍ଦ୍ରବଂଶରୁ ବହୁ ରାଜବଂଶ ଉଦ୍ଭବ ହୋଇ ଥିବାର କଥା ଲିଖିତ ଅଛି । ଏହି ଚନ୍ଦ୍ର ବା ସୋମକୁଳରେ ଜନମେଜୟ ଜନ୍ମିଥିଲେ । ଜନମେଜୟଙ୍କର ପୁତ୍ରର ନାମ ଯଯାତି ଓ ଯଯାତିଙ୍କର ପୁତ୍ରର ନାମ ଭୀମରଥ, ଥିବାର କଥା ୩ୟ ଶ୍ଳୋକରୁ ଜଣାଯାଏ । ୪ର୍ଥ ଶ୍ଳୋକରେ ତାଙ୍କ ପୁତ୍ର ଧର୍ମରଥ ରାଜା ହୋଇ ଶତ୍ରୁମାନଙ୍କ ସହିତ ଯୁଦ୍ଧରେ ଲିପ୍ତ ଥିବାର କଥା ବର୍ଣ୍ଣିତ ଅଛି । ତାଙ୍କର ଭାଇ ନଘୁଷ ତତ୍ପରେ ରାଜା ହୋଇଥିଲେ । ନଘୁଷଙ୍କ ପରେ ତାଙ୍କର ଭାଇ ଯଯାତି କୋଶଳ ଓ ଉତ୍କଳର ରାଜା ହୋଇ ଦେଶରୁ ଶତ୍ରୁମାନଙ୍କୁ ବହିଷ୍କୃତ କରିଥିଲେ । ଯଯାତିଙ୍କର ପୁତ୍ର ଉଦ୍ୟୋତ କେଶରୀ । ବାଲିଝଣ୍ଡର ଓ ଅନ୍ୟାନ୍ୟ ସୋମକୁଳ ତମ୍ବାପଟା ଗୁଡ଼ିକରେ ଦେଖାଯାଏ ଯେ ରାଜାମାନଙ୍କର ନାମ ପୂର୍ବେ 'ମହାଶିବ ଗୁପ୍ତ' ବା 'ମହାଭବ ଗୁପ୍ତ' ଓ 'ସୋମକୁଳତିଳକ ତ୍ରିକଳିଙ୍ଗା-ଧିପତି ବିରୁଦ ଅଛି, ମାତ୍ର ଭୁବନେଶ୍ୱର ଲିପିରୁ କୌଣସି ରାଜାଙ୍କ ନାମ ପୂର୍ବେ ବା ପରେ 'ମହାଶିବ ଗୁପ୍ତ' ବା 'ମହାଭବ ଗୁପ୍ତ' ବିରୁଦ ନାହିଁ । କେବଳ ଶେଷରେ ଉଦ୍ୟୋତକେଶରୀଙ୍କ ନାମ ପୂର୍ବେ 'ସୋମକୁଳ-ତିଳକ ତ୍ରିକଳିଙ୍ଗାଧିପତି' ବିରୁଦ ଅଛି । ବିରୁଦ ଲିଖନର ଏହି ବ୍ୟତିକ୍ରମର କାରଣ କିଛି ସ୍ଥିର କରି ହେଉ ନାହିଁ । ତେବେ ଏତିକି ମନେ ହେଉଛି ଯେ ତମ୍ବାପଟ୍ଟାଗୁଡ଼ିକ ସରକାରୀ ଦଲିଲ ଥିବାରୁ ସେଥିରେ ରାଜକୀୟ ନିୟମ ସବୁ ଲକ୍ଷିତ ହେଉଥିଲା, କିନ୍ତୁ ଭୁବନେଶ୍ୱର ଲିପିଟି ରାଜମାତା କୋଳା-ବତୀଙ୍କର ପ୍ରଶସ୍ତି ଥିବାରୁ ସେଥିରେ ପ୍ରଶସ୍ତିକାର ରାଜକୀୟ ନିୟମପ୍ରତି ବିଶେଷ ଦୃଷ୍ଟି ଦେଇ ନଥିଲେ ।

ସୋମବଂଶୀ ରାଜାମାନଙ୍କର ବଂଶ ତାଲିକା ପ୍ରଥମେ ପଣ୍ଡିତ ବିନାୟକ ମିଶ୍ର ପ୍ରସ୍ତୁତ କରିଥିଲେ । ଏହି ତାଲିକାକୁ ମୁଁ ଗ୍ରହଣ କରିଥିଲି । ୧୯୪୭ରେ ଡାକ୍ତର ଦୀନେଶଚନ୍ଦ୍ର ସରକାର ବାଲିଝର ତମ୍ବାପଟାର ୭ମ ଶ୍ଳୋକର ଅର୍ଥ ଅନ୍ୟ ପ୍ରକାର କରି ମିଶ୍ର ମହାଶୟଙ୍କ ବଂଶ ତାଲିକା ଯାହାକୁ ମୁଁ ମଧ୍ୟ ଗ୍ରହଣ କରିଥିଲି—ସାମାନ୍ୟ ପରିବର୍ତ୍ତନ କରି ଅଛନ୍ତି । ଡାକ୍ତର ସରକାରଙ୍କ ସହିତ ମୁଁ ଏକମତ ହୋଇ ନଥିବାରୁ ରଏଲ ଏସିଆଟିକ ସୋସାଇଟି ପତ୍ରିକାରେ ୧୯୪୭ରେ ପ୍ରକାଶିତ ମୋର ପ୍ରବନ୍ଧରେ ତାହା ଗୃହୀତ ହୋଇନାହିଁ । ଯେଉଁ ପାଠକମାନେ ଏ ବିଷୟରେ ଅଧିକ ଜାଣିବାକୁ ଇଚ୍ଛୁକ, ସେମାନେ ଇଣ୍ଡିଆନ ହିଷ୍ଟୋରିକାଲ କ୍ୱାଟାଲି ପତ୍ରିକା ୨୨ଶ ଭାଗ ଦେଖନ୍ତୁ । ଜନମେଜୟଙ୍କ ତମ୍ବାପଟାରେ 'ଶିବଗୁପ୍ତ'ର ଉଲ୍ଲେଖ ଥିବାରୁ ତାଙ୍କ ପିତା ଶିବଗୁପ୍ତ ୧ମ ଥିବାର ମୁଁ ସ୍ଥିର କରିଥିଲି । ମାତ୍ର ଡାକ୍ତର ସରକାର ତାଙ୍କୁ ବାଦ ଦେଇ ଥିବାରୁ 'ମହାଶିବଗୁପ୍ତ' ବିରୁଦଧାରୀ ରାଜାମାନଙ୍କ ମଧ୍ୟରୁ ତାଙ୍କ ତାଲିକାରେ ଜଣେ କମ୍ ଅଛନ୍ତି । ରାଜେନ୍ଦ୍ରଶ୍ୱେଳଙ୍କ ତାମିଲ ଲିପିରୁ ମିଳିଥିବା ରାଜାଙ୍କ ନାମ ଇନ୍ଦ୍ରରଥ ବା ଅନ୍ୟ କିଛି ଥିଲି ତାହା ସ୍ପଷ୍ଟ ଭାବରେ ପଠିତ ହୋଇ ନଥିବାରୁ ଓ ଇନ୍ଦ୍ରରଥଙ୍କର ନାମ ଅନ୍ୟ ଲିପିରୁ ମିଳି ନଥିବାରୁ ମୁଁ ସେହି ରାଜାଙ୍କୁ ଧର୍ମରଥ ବୋଲି ଗ୍ରହଣ କରିଥିଲି; ମାତ୍ର ଡାକ୍ତର ସରକାର ନହୁଷଙ୍କୁ 'ଇନ୍ଦ୍ରରଥ' ଥିବାର ଅନୁମାନ କରିଅଛନ୍ତି । ନହୁଷଙ୍କର ଅନ୍ୟ ନାମ ଇନ୍ଦ୍ରରଥ ମଧ୍ୟ ହୋଇପାରେ । ଏହାଦ୍ୱାରା ମଧ୍ୟ ବଂଶାବଳୀର ତାଲିକାରେ ବିଶେଷ କିଛି ପରିବର୍ତ୍ତନ ହୋଇ ନାହିଁ । ଡାକ୍ତର ସରକାର ମୋ ଦ୍ୱାରା ସ୍ଥିରୀକୃତ ରାଜାମାନଙ୍କ ରାଜତ୍ୱକାଳ ଗ୍ରହଣ କରି ଅଛନ୍ତି । ପଣ୍ଡିତ ବିନାୟକ ମିଶ୍ରଙ୍କ ମତ ଅନୁସାରେ ସୋମକୁଳୀ ରାଜାମାନଙ୍କର କୋଶଳ ଓ ଉତ୍କଳ ଭେଦରେ ଦୁଇଟି ଶାଖା ମୁଁ ଗ୍ରହଣ କରିଥିଲି । ମାତ୍ର ଡାକ୍ତର ସରକାର ତାହା କରି ନଥିଲେ ମଧ୍ୟ ଦୁଇଟି ସ୍ୱୀକାର କରିଅଛନ୍ତି । ଡାକ୍ତର ସରକାର ପରବର୍ତ୍ତୀ ସୋମକୁଳୀ ରାଜାମାନଙ୍କର ନାମ ଶେଷରେ ଯୋଗ କରି ଅଛନ୍ତି, ମାତ୍ର ସେମାନଙ୍କର ସମସ୍ତ ଏହି ଲିପିର ପରବର୍ତ୍ତୀ ହେଉ ଥିବାରୁ ଉପରୋକ୍ତ ବଂଶ ତାଲିକାରେ ତାହା ଦିଆଗଲା ନାହିଁ ।

## ଶିବଗୁପ୍ତଙ୍କ ପୁତ୍ର

୧ ଜନମେଜୟ—(ମହାଭବ ଗୁପ୍ତ ୧ମ)

କୋଶଳ ଶାଖା | (ପ୍ରାୟ ଖ୍ରୀ: ୯୫୦) ଉତ୍କଳ ଶାଖା

୨ ଯଯାତି (ମହାଶିବଗୁପ୍ତ ୨ୟ) (ଖ୍ରୀ:୯୭୫) — ବିଚିତ୍ରବୀର

୩ ଭୀମରଥ (ମହାଭବ ଗୁପ୍ତ ୨ୟ) (ଖ୍ରୀ ୧୦୦୦)

୪ ଧର୍ମରଥ (ମହାଶିବଗୁପ୍ତ ୩ୟ) (ଖ୍ରୀ:୧୦୨୦) — ଅଭିମନ୍ୟୁ

୫ ନହୁଷ (ମହାଭବ ଗୁପ୍ତ ୩ୟ (ଖ୍ରୀ:୧୦୨୩-୨୪)
(ଇନ୍ଦ୍ରରଥ)

୬ ଚଣ୍ଡୀହର=ଯଯାତି ମହାଶିବଗୁପ୍ତ ୩ୟ)
(ଖ୍ରୀ:୧୦୨୫-୫୦)

୭ ଉଦ୍ୟୋତ କେଶରୀ (ମହାଭବଗୁପ୍ତ ୪ର୍ଥ)
(ଖ୍ରୀ:୧୦୫୦-୭୦)

ବ୍ରହ୍ମେଶ୍ୱର ଲିପିଟି ବୋଧହୁଏ ସୋମକୁଳୀ କେଶରୀ ରାଜାମାନଙ୍କ ରାଜତ୍ୱକାଳର ଶେଷ ଲିପି ବୋଲି ଧରା ଯାଇ ପାରେ । ଏହାପରେ ପ୍ରାୟ ପଚାଶ ବର୍ଷ ପର୍ଯ୍ୟନ୍ତ ଏହି ରାଜବଂଶର ରାଜତ୍ୱ ଓଡ଼ିଶାରେ ଚାଲିଥିଲେ ମଧ୍ୟ ଏହି ସମୟ ମଧ୍ୟରେ ଏହି ବଂଶର କୌଣସି ରାଜକୀୟ ଶାସନର ଲିପି ମିଳି ନାହିଁ । ସନ୍ଧ୍ୟାକର ନନ୍ଦୀକୃତ 'ରାମଚରିତ'ରୁ କର୍ଣ୍ଣକେଶରୀଙ୍କ ନାମ ମିଳେ । ସେ ରାଜା ଥିଲେ, ମାତ୍ର ତାଙ୍କର କୌଣସି ଲିପି ମିଳି ନାହିଁ ।

ବ୍ରହ୍ମେଶ୍ୱର ଲିପିର ୨ୟ ଶ୍ଳୋକରେ ବର୍ଣ୍ଣିତ ଅଛି ଯେ ଓଡ୍ର-ଦେଶ ଜୟ କରିବା ପୂର୍ବରୁ ଜନମେଜୟ 'ତ୍ରିକଳିଙ୍ଗାଧିପତି' ଥିଲେ । ଜନମେଜୟଙ୍କ ରାଜତ୍ୱର ୩ୟ ସମ୍ବତ୍ସରରେ ପ୍ରଦତ୍ତ ଏକ ତାମ୍ରଶାସନରୁ ଜଣାଯାଏ ଯେ ତାଙ୍କର 'ସୋମକୁଳତିଳକ' ଓ ତ୍ରିକଳିଙ୍ଗାଧିପତି ଉପାଧି ଥିଲା । ଜନମେଜୟଙ୍କର ରାଜତ୍ୱାରମ୍ଭରେ ତ୍ରିକଳିଙ୍ଗାଧିପତି ବିରୁଦ ଥିବାରୁ ମନେ

ହୋଇଛି ଯେ ସେ ଉତ୍କଳ ଦେଶ ଜୟ କରିବା ସଙ୍ଗେ ସଙ୍ଗେ ଏହି ଉପାଧିରେ ଭୂଷିତ ହୋଇ ଥିଲେ । ଏହି 'ସୋମକୁଳତିଳକ' ଓ ତ୍ରିକଳିଙ୍ଗାଧିପତି ବିରୁଦଦ୍ୱୟ ବ୍ରହ୍ମେଶ୍ୱର ଲିପିରେ ଉଦ୍ୟୋତକେଶରୀଙ୍କର ନାମ ପୂର୍ବେ ମଧ୍ୟ ଦେଖାଯାଏ । ଏହି 'ତ୍ରିକଳିଙ୍ଗାଧିପତି ବିରୁଦଟିର ତାତ୍ପର୍ଯ୍ୟ ଠିକ ଭାବରେ ଏ ପର୍ଯ୍ୟନ୍ତ ବୁଝାଯାଇ ନାହିଁ । ଏହା ସହିତ ଉତ୍କଳଦେଶ ବିଜୟର ଯେ କିଛି ସମ୍ପର୍କ ଅଛି ବୋଲି ଅନୁମିତ ହୁଏ । ସୋମକୁଳୀ କେଶରୀ ରାଜବଂଶର ପୂର୍ବବର୍ତ୍ତୀ ଭୌମ ରାଜାମାନଙ୍କର ଏହି ଉପାଧି ନଥିଲା, ମାତ୍ର ଏହି ଉପାଧିରେ କେଶରୀ ବଂଶ ବ୍ୟତୀତ ପରବର୍ତ୍ତୀକାଳର ଗଙ୍ଗ ବଂଶ ଓ ହୈହୟ ବଂଶର ରାଜାମାନେ ଏହି ବିରୁଦ ବ୍ୟବହାର କରୁଥିବାର କଥା ମଧ୍ୟ ସମସାମୟିକ ଲିପିରୁ ଜଣାଯାଉଛି । ଅନ୍ୟ ଏକ ପ୍ରବନ୍ଧରେ 'ତ୍ରିକଳିଙ୍ଗ' ଓ ତ୍ରିଲିଙ୍ଗ ଇତିହାସ ଲେଖିବାର ବାସନା ରହିଲା ।

ପଂକ୍ତି ୧ । ଓଁ ବ୍ରହ୍ମୋପେନ୍ଦ୍ର ମହେଶ୍ୱରେନ୍ଦ୍ର ବଳ [ଖରକ୍ଷ କୃତା ହ୍ମାଶ୍ୱରୌ] [ର୍ଭ୍ରା] ମ୍ୟନ୍ମନ୍ଦର ପର୍ବତେନ ମଥିତାତ୍ କ୍ଷିରୋଦଧେର୍ମଧ୍ୟତଃ । ବିସ୍ଫୀତାମୃତକୌମୁଦୀଭରିଖିଲଂ ତ୍ରୈଲୋକ୍ୟ ମୁଦ୍ୟୋତୟନ୍ ରାଜେନ୍ଦ୍ର ସକଳଃ ସମ—

ପଂକ୍ତି ୨ ।·········ଗ୍ର ବସନ୍ତ ମାର୍ଦ୍ଧଂ ଶ୍ରିୟା ଜାତବାନ୍ ।୧।

ତଦବଂ [ଶେଽଜନ ଶୁଭ୍ର କୀର୍ତ୍ତିରତୁଲୋ ବି] ଶ୍ୱମ୍ଭର ବଲ୍ଲଭୋ

ରାଜା ଶ୍ରୀ ଜନମେଜୟଃ ସ ଋପୁହା ଭୂତସ୍ତ୍ରିଲିଙ୍ଗାଧିପଃ ।

ଦନ୍ତାଦନ୍ତିକରାକଚଗ୍ରମସିକ୍ଷାତ୍ ଭଗ୍ନେ ଋପୁଣାଂ ହ୍ରୀପେ

ପଂକ୍ତି । ୩ । ଯ ଲୁନ୍ତାଗ୍ର ହତୌଡ୍ରଦେଶ ନୃପତେ ଲକ୍ଷ୍ମୀଂ [ସମାକୃଷ୍ଟବାନ୍] ୨ ।

[ତସ୍ୟାତେନ୍ତ ସୁ] ଟାରରାଜରମଣୀ-ସୀମନ୍ତ ବିଭ୍ରାନ୍ତ କୃତ୍

ବିଖ୍ୟାତୋ ନୟବିକ୍ରମାଭ୍ୟ ତମନ୍ତଃ ସମ୍ରାଟ ରାଜେଶ୍ୱରଃ ।

ବାଲ୍ୟାଦକ୍ଷତ ବୈଧ କର୍ମ

ପଂକ୍ତି ।୪।·········ଚଚିତତ୍ୟାଗୀ ମହାଧାର୍ମିକେ ।

ରାଜାଶୌର୍ଯ୍ୟମୟୋ ମଜା [ତ୍ରି ରତ୍ନବତ୍ ଯୋ]

ମେହଦ୍ଭୀମମଣ୍ଡନଃ ।୩।

ତମ୍ୟାନ୍ୱେ କଳିକାଳ କଳ୍ପବୃକ୍ଷଶ୍ଚାପୀ ଭୂପାଳ ଚୂଡ଼ାମଣି-
ମର୍ଯ୍ୟାଦାମୃତ ସତ୍ତ୍ୱଧୈର୍ଯ୍ୟ କମଳା ଗାମ୍ଭୀର୍ଯ୍ୟରତ୍ନାକରଃ ।

ପଂକ୍ତି ।୫। ମାଙ୍ଗଲ୍ୟାଦୟ ଶକ୍ତିସିଦ୍ଧି ବିଦୁରଃ
ପ୍ରଖ୍ୟାତ କୀର୍ତ୍ତି [ସଦା]
[ରା] ଜା ଶ୍ରୀ [ମ]ରଥୋ ମହାରଥଗୁଣଃ
ଶୁଭ୍ରୈବଭୂବାଗ୍ରହା ।୩।
ତସ୍ମାଦଜନ୍ୟ ଭୁଜବଜ୍ର ବିନଷ୍ଟ ତାର
ରୁର୍ଜସ୍ୱଳଃ ପରଶୁରାମ ଇବ ଦ୍ୱିଷାଯୁଃ ।

ପଂକ୍ତି ।୬। ମଧ୍ୟନ୍ଦିନାର୍କ ଇବ ଛୀବ୍ରତରଃ ପ୍ରତାପୋ
ରାଜା ବଭୂ (ବଭୂ) ବ ଧର୍ମରଥୋ (ଽଗ୍ରଣୀରଃ) ।୪।

ତସ୍ମିନ୍ ଗତେ ଦିବମପୂର୍ବିଣି ରାଜମଲ୍ଲେ
ନାନାଭଟୈରୁପଦ୍ରୁତେ ସକଲେଽପି ରାଷ୍ଟ୍ରେ ।
ଦେଶାନ୍ତରସ୍ଥିତବନ୍ତ ପ୍ରବଳ

ପଂକ୍ତି ।୭ ।.................ପ୍ରସାରେ
କାଳଃ କିଷ୍ଣାନଗମନନ୍ତ ଯଥା କଥଞ୍ଚିତ୍ । ୭ ।
ତ ତୋଽପି ଜନମେଜୟସ୍ୟ ତନୟେ
ଭୂତଃ ପ୍ରସିଦ୍ଧକ୍ଷିତୌ
ସର୍ବତ୍ରାପି ବିଚାରସାର ଇତି
ଯସ୍ତସ୍ମାଦଜନ୍ୟାନୁଜଃ ।
ଧନ୍ୟୋଽସାବଭିମନ୍ୟୁଶତ୍ୟନ୍ତ ବଳୀ

ପଂକ୍ତି ।୮। ... ... ତସ୍ୟୋପତେଜାଃ ସୁତଃ
ଶ୍ରୀ ଚଣ୍ଡୀହର ଇତ୍ୟଭୂନ୍ନରପ (ତଃ)
ସର୍ବୈରମାତ୍ୟୈଃ କୃତଃ ।୭।
ଭୃତ୍ୟାମାତ୍ୟ ସୁହୃତ୍ ପ୍ରଜାଶ୍ରିତ ଜନ
ଜ୍ଞାତୀଷ୍ଟ ବନ୍ଧୁନ ଯଥା
ଯୋଗଂ ସମ୍ପସରପାଳ୍ୟ ରାଷ୍ଟ୍ରମୁଭୟଂ
ନିଷ୍କଣ୍ଟକା କୃତ୍ୟ ଯଃ ।

ପଂକ୍ତି । ୯ । ଭୂତୋଽନେକ ନରେନ୍ଦ୍ର ଶେଖରମଣି
ପ୍ରୋଦ୍‌ଗଛଦଂଶୁ [ଚ୍ଛଟା
[ଲୋକୋ]ଦ୍ଭାସିତାପାଦପଦ୍ମଯୁଗଳଃ
ସବାବନ [ବଦ୍ଧୋ]ତଃ । ୮ ।
ଶ୍ରୀମାନାଚତୁରବ୍ଧିସୀମ ବସୁଧା
ଚଣ୍ଡୈକ ରକ୍ଷାମଣି
ମୂ[ର୍ଦ୍ଧ]ାଦ୍ଧାତେବ ପୃଥୁସମୋ-
ପଂକ୍ତି । ୧୦ । ···ଭରତବଦ୍‌ରାଜା ଜଗଜ୍ଜନ୍ମରଃ ।
ମୂର୍ଦ୍ଧ୍ନିଚନ୍ଦ୍ରମ [ସୋଃ ମମୈନ୍ଦ୍]ିକ
କରୈରୁଦ୍ଧୀପୟନ୍ ରୋଦସୀଂ
ମୃତ୍ୟାଦ୍ଯେ ସବଟେବ ମୂଲୁରୁଦଗାଦ୍
ଦ୍ୟୋତକଃ କେଶରୀ । ୯ ।
ବାଲକ୍ରୀଡାଭରେବ ପ୍ରକ୍ତଭଟମଖିଳଂ ଡାହଲଂ ଗୈଡ଼୍ର
ପଂକ୍ତି । ୧୧ । ··· ··· ··· ଗୌଡ଼ୌ
ଯୁଦ୍ଧେ ସନ୍ନଦ୍ଧ ଯୋଧ ଦ୍ୱିରଦବଲଘଟା
ସଙ୍ଗ [ର]ଂ ଯୋ ବ୍ୟ]ଜନ୍ୟ ।
ଉଦ୍ଧୃତ୍ତାକ୍ଷୋହଣୀ ପଦ୍‌ଗୁରୁଗତ
ବନମଭୂଦ୍ଭରାକ୍ରାନ୍ତ ପୃଥ୍ୱୀ
ରାଜ୍ଞଃ କୁବନ୍ନଶେଷାନବତଣୀରସୋ
ଜଷ୍ଟରୁର୍ବୀ ମକୈଷୀତ୍ । ୧୦ ।
ପଂକ୍ତି । ୧୨ । ତନ୍ମାତା ପାନକ୍ଷ୍ଣକୂଲସ୍ୟ ଦୁହିତା
କୋଲାବତୀ ନାମତୋ
[ଯାସୌ] ଶୀତକରାନ୍ୱୟସ୍ୟ ମହିଷୀ
ଦୁର୍ଗେବ ଲକ୍ଷ୍ମୀରବ ।
ଯସ୍ୟାଃ କାର୍ତ୍ତନମୂର୍ଦ୍ଧ୍ୱସୁ ଧ୍ୱଜଚୟୋ
ବାତ୍ୟାଭରୂର୍ଦ୍ଧ୍ୱଂ ଗତୋ
ହସ୍ତାଭଃ ଶଶୀଲକ୍ଷ୍ମ ଲେପ୍ତୁମିବ-
ପଂକ୍ତି । ୧୩ । ··· ଖେସୋଦ୍ରାହମୁଦ୍‌ଗଚ୍ଛତ । ୧୧ ।

ଶ୍ରୀମଦ୍‌ବ୍ରହ୍ମେଶ୍ୱରସ୍ୟ ପ୍ରଶ [ତମଲ ହ୍ମି]ତଃ
ସ୍ପର୍ଣ୍ଣଗୋ ମୁକ୍ତଦସ୍ୟ
ପ୍ରାସାଦୋଽଭ୍ରଂକଷାଗ୍ର ସ୍ଫୁରଣିରଥରସ୍ମୂ
ବ୍ୟାହୃତ ସ୍ଥାଣୁ କଲ୍ପଃ ।
ଏକାମ୍ରେ ସିଦ୍ଧତୀର୍ଥେ ଚତୁରମଲକୁଳୀ ନାଟ୍ୟଶାଳା
ପଂକ୍ତି । ୧୪ । ... ... ... ସମେତଃ
କୋଳାବତ୍ୟା ତପ୍ୟୈଷଃ କ୍ଷିତମୁକୁଟନଭଃ
[କାରିତଃ] କୀର୍ତ୍ତିରାଜଃ । ୧୨ ।

ଲୋକାଲୋକ ମହାଦ୍ରି ସପ୍ତଜଲଧି
ଦ୍ୱୀପସ୍ଥଲୀ ପିଣ୍ଡିକା
ମଧ୍ୟସ୍ଥାୟୁକ ମେରୁଲିଙ୍ଗମୁପର
ବ୍ରହ୍ମାଣ୍ଡ ହେମାଳୟମ୍ ।
ପଂକ୍ତି । ୧୫ । ଗଙ୍ଗାଭିଃ ସ୍ନପୟନ୍ନହର୍ନିଶମସୌ
ଦେବ [ସ୍ତ୍ରୀଲୋକା ପତ]
ବ୍ରହ୍ମା ସ୍ୱର୍ଚ୍ଚିତ ଯଂ ଶିବଂ ସ ଭଗବାନ୍
ବ୍ରହ୍ମେଶ୍ୱରୋଽସ୍ତୁନ୍ଦିଭୁଃ । ୧୩ ।

ଊର୍ଦ୍ଧ୍ୱ ଭ୍ରାଜତ୍କନକକଳଶୋ-
ଊିଷ୍ମୁଦଂଶୁକଗର୍ଚ୍ଚି
ଦୀପ୍ତାଲୋକ ପ୍ରସରକୃତ-
ପଂକ୍ତି । ୧୬ । ... ... ଦ୍ୱିକ୍ ଚକ୍ରବାଳପ୍ରସାଦଃ ।
ପ୍ରାସାଦୋଽସ୍ୟ ନିଦଶ ଯୁବ[ତି ବ୍ରା]ତ
ସନ୍ଧ୍ୟା ପ୍ରଦୀପୋ
ମୂର୍ଦ୍ଧେ ବାଦ୍ରେଃ ସକଳ ଗଗନଂ
ମଣ୍ଡୟନ୍ନୁଚକାସ୍ତି । ୧୪ ।
ରତ୍ନାଲଂକୃତଭୂଷିତାଙ୍ଗ ସୁଷମା
ଦେଦୀପ୍ୟମାନା ଦ୍ୱବୋ
କ୍ରୀଡନ୍ତ୍ୟ—

ପଂକ୍ତି । ୧୭ । ··· ସ୍ଫୁଡ଼ତଃ ସ୍ନିଗ୍ଧା ଇବ କୁଚ-
ଶ୍ରୋଣୀଭର ବ୍ୟାକୁଳାଃ ।
ସୃନ୍ଦର୍ଯୌଷି କମାନକାଂଇବ
ଦୃଶାମନ୍ତଃ ପ୍ରବିଷ୍ଟା ନୃଣା-
ମଦ୍ୟୈ ଚଞ୍ଚଳ କର୍ଣ୍ଣଜାହ୍ନବୀସ୍ତନା
ଦତ୍ତାସ୍ତପ୍ପୃ ଦାରକାଃ । ୧୫ ।
ବେଦ ବ୍ୟାକରଣାର୍ଥଶାସ୍ତ୍ର କବିତା
ପଂକ୍ତି । ୧୮ । ··· ତର୍କାଦ୍ୱ ବିଦ୍ୟାଧରୈ
ବୃନ୍ଦୈର୍ବାବତଥ ପ୍ରମନ୍ନ ବ [ନସ୍ତୋ]
ଦ୍ବୁଦ୍ଧିର୍ବିଶୁଦ୍ଧାନ୍ୱସ୍ତଃ ।
ତାରାଧୀଶ୍ୱର ବଂଶଜାବନଭୂଜାଂ
ଶୁଭ୍ରଂ ଯଶସ୍ତନ୍ୱତୀ-
ମ୍ନଟ ଶ୍ରୀ ପୁରୁଷୋତ୍ତମଃ କବିବରୋଽକାର୍ଷୀଦିମାଂ
ବର୍ଣ୍ଣନାମ୍ । ୧୬ ।
ପଂକ୍ତି । ୧୯ । ଯନଗବନସମୁଦ୍ରା
ମେଦିନୀ ଯାବଦାସ୍ତେ
[ତ୍ରିଭୁ]ବନ ନଜ ନେନେ
ପୁଷ୍ପବନ୍ତୌ ଚ ଯାବତ୍ ।
ଅତ୍ର ଜଗଦୁପରସ୍ତୋ
ଯାବଦୌତ୍ତନପାଦ
ର୍ଜନବଦଦସୁଧେୟଂ
ତାବଦସ୍ତୁ ପଶସ୍ତିଃ । ୧୭ ।
ପଂକ୍ତି । ୨୦ । ପରମମାହେଶ୍ୱର ମହାରାଜାଧିରାଜ
ସୋମ'କୁଳତିଲକ) ତ୍ରିକଳିଙ୍ଗାଧିପତି ଶ୍ରୀମଦୁଦ୍ୟୋତ
କେସରୀରାଜ ଦେବସ୍ୟ ବିଜୟରାଜ୍ୟେ ସମ୍ବତ୍ ୧୮
ଫାଲଗୁନ ଶୁ ଦି ୩ ସୂତ୍ରଧାର
ରା(ଣ୍ଣେଣ ଉତ୍କୀର୍ଣ୍ଣମ୍)

— — —

# ଭୁବନେଶ୍ୱରର
# ଓଡ଼ିଆ ତାମିଲ ଶିଳାଲିପି

ଭୁବନେଶ୍ୱରର କେଦାରଗୌରୀର ନିକଟବର୍ତ୍ତୀ ଏକ ସ୍ଥାନ ପତିତ ଅବସ୍ଥାରେ ଥିବା ସମୟରେ କଲିକତା ନିବାସୀ ଗଣପତି ସରକାର ତାହା ପଟା ନେଇଥିଲେ ଓ ସେଠାରେ ଘର କରିବା ସମୟରେ ଖଣ୍ଡିଏ ଗଣେଶ ମୂର୍ତ୍ତି ଓ ଲିପିଯୁକ୍ତ ପଥର ପାଇଥିଲେ, ତାହାକୁ ୧୯୧୭ରେ କଲିକତାକୁ ସ୍ଥାନାନ୍ତରିତ କରିଥିଲେ । ତତ୍ପରେ ୧୯୨୪ର ଏସିଆଟିକ ସୋସାଇଟି ପତ୍ରିକାରେ ଏହି ଶିଳାଲିପିର ପାଠ ଏକ ପ୍ରବନ୍ଧରେ ଫଟୋ ସହ ଛପାଇଥିଲେ । ଗଣପତି ସରକାରଙ୍କ ମୃତ୍ୟୁ ପରେ ଏହି ଦ୍ୱିଭାଷୀ ଶିଳାଲିପିଟି କଲିକତା ବିଶ୍ୱବିଦ୍ୟାଳୟର ଆଶୁତୋଷ ମିଉଜିଅମକୁ ସ୍ଥାନାନ୍ତରିତ ହୋଇ ସେଠାରେ ସୁରକ୍ଷିତ ଅଛି । ଏହି ଲିପିର ପାଠ ପ୍ରଫେସର ଡାକ୍ତର ଆର୍ତ୍ତବଲ୍ଲଭ ମହାନ୍ତି ମହାଶୟ 'ପ୍ରାଚୀନ ଗଦ୍ୟ, ପଦ୍ୟାଦର୍ଶ' ପୁସ୍ତକରେ ୧୯୩୨ରେ ଦେଇଥିଲେ । ମୁଁ ଏହି ଶିଳାଲିପିର ଛପା ସଂଗ୍ରହ କରିଥିଲି । ଏହାର ଛପା ପାଇବା ପାଇଁ ଆଶୁତୋଷ ମିଉଜିଅମର ଅଧ୍ୟକ୍ଷ ମୋର ବନ୍ଧୁ ଶ୍ରୀଯୁକ୍ତ-ଦେବପ୍ରସାଦ ଘୋଷଙ୍କଠାରେ ଋଣୀ । ଏହି ଶିଳାଲିପିରେ ଓଡ଼ିଆ ଲିପିର ୩୪ଟି ଧାଡ଼ି ଅଛି । ତାମିଲ ଲିପିର ପାଠ କରିପାରି ନଥିବାରୁ ତାହା ଏଠାରେ ଦେଇ ପାରିଲି ନାହିଁ । ଶୁଣିଲି ଯେ ଡାକ୍ତର ଦୀନେଶଚନ୍ଦ୍ର ସରକାର ଏପି ଗ୍ରାଫିଆ ଇଣ୍ଡିକା ଗ୍ରନ୍ଥମାଳାରେ ଏହି ଶିଳାଲିପିର ଉଭୟ ଲିପିର ପାଠ ଦେଇ ଏକ ପ୍ରବନ୍ଧ ଲେଖି ଅଛନ୍ତି ।

ଲିପିର ପାଠ ତଳେ ଦିଆଗଲା । ପାଠର ଶୁଦ୍ଧି ବନ୍ଧନୀରେ ଦିଆ ଯାଇଛି ।

୧ । ଓ (ଶଙ୍ଖରେ) ସ୍ୱସ୍ତି ଗୁର ଶୀର ନରନାର ସୀଙ୍ଘ ଦେବ
୨ । ଶ ପ୍ରବଧମାନେ ଶାକେ ଶକେ ମ -
୩ । ସ୍ୱତ୍ ୨୨ ଶ୍ରୀ କାର୍ତ୍ତିକ କୃ ଷ୍ଟ ୭ ରଶୀବା
୪ । ରେ ଶ୍ରୀ କାର୍ତ୍ତୀବାସ:ଖେଣ୍ଡଂ ସୀଧେ
୫ । ସର ମଠର ବଡ଼ ନରସୀଙ୍ଘ ଦେବ—
୬ । ଙ୍କର ଆଶକାମାର୍ଥ ପୂର୍ବ୍ବକେ ॥
୭ । ବାଘମଶ୍ର ବାରବାଟୀ ଭୂମୀ ଏକାଦ୍
୮ । ଶ ରୁଦ୍ର ଖ୍ରୀଷା ଦେବା ଭୂମୀ ସମଂ
୯ । ଧେ ତପଶ୍ରଜ ମାହା ମୁମ୍ନା ଦୁ ଗ୍‌ଗା
୧୦ । ଭଟ ଆଗ୍ନପ ଙ୍କେର ବଂଧା କଲା । ଏ
୧୧ । ମାଡ଼ ଶତ ଦେଡ଼ ୧୫୦ ଉଷେମ୍ଭ
୧୨ । ର ନାଏକଙ୍କର ତତ୍ତ୍ୱ ଘେତଲା ।
୧୩ । ଏ ମାଡ଼ ଦସ ଧାନ୍ୟ ପୈଠୀ ହିଂ—
୧୪ । ସେବ ତପଶ୍ରଜ ମାହାମୁମ୍ନା ଏ ଦୁ
୧୫ । ଇ ଧାନ୍ୟ ସୁନା ଦୁଗା ରୁଟେ ଉଷେ ସ—
୧୬ । ର ନାଏକଙ୍କେ ଦେଇ ଅଙ୍କ କଲ ଏ କଉଡ଼ୀ ଏ
୧୭ । ଧାନ ସୁନା ମୂଳକଳନ୍ତର କରନ୍ତେ ମଡ଼
୧୮ । ଶକେତକ ଅମ୍ବୀ ୧୮୦ ତପଶ୍ରଜ ମୂନୀ ସୀ—
୧୯ । ବ ପ୍ରାପ୍ତେଂ ନପଚନ୍ଦବର୍ଣ୍ଣ ସ୍ଥାନାପର୍ଣ୍ଣ ହୋ –
୨୦ । ଲଲା । ଏ ତପଚନ୍ଦବର୍ଣ୍ଣଙ୍କର ଦୁଗାଭଟଆ
୨୧ । ଗ୍ନପଙ୍କର ଶ୍ରମୀ । ଦୁଗାଭଟ ଆଗ୍ନପେ
୨୨ । ସ୍ୱଣୀ ଏକ ଶ୍ରମୀ ବୋଲ ମୈଷପକ୍ଷ ହୋ
୨୩ । ଇଲ । ଏ ବାଘମଶ୍ର ଭୂମୀ ବାରବାଟୀ ପଂ –
୨୪ । ଲ ଭୋଗ୍ୟ ଅସୀ ଆମତବେ କାଲ କେ
୨୫ । ତପଚନ୍ଦବର୍ଣ୍ଣ କା ହା ଥରଇ ଦୁର୍‌ଗା ଭଟ
୨୬ । ଟ ଆଗ୍ନପେପାଣୀ ଧୀଲ୍ଲ । ଶ୍ରୀ ଶାର
୨୭ । ନରସୀଙ୍ଘ ଦେବଙ୍କର ଆଜ୍ଞଣ କା —
୨୮ । ମାର୍ଥେ ଏକାଦଶ ନ୍‌ଦ୍ର ଖ୍ରୀଷା କଶ୍ରଇ

୨୯ । ବା ଏ ଭିକ୍ଷା ନେତ୍ର ଦେଶ ପାଣ୍ଡୀ ଦେଶ କା
୩୦ । ଙ୍ଗୀ ନେବମ ଏ ଖାସା ଦେବେମ ଜମୀଲ୍ ନେହା
୩୧ । ଇ ମଣ୍ଡାମଣ୍ଡେ ସାକ୍ଷୀ କଥା ଆଚ୍ଛବନ୍ତ
୩୨ । ହୋଇଲ୍ । ତପସ୍ୱୀଙ୍କୀ ଭିକ୍ଷା କେତେ କେତେ
୩୩ । କାଳ ଚନ୍ଦ୍ର ସୂର୍ଯ୍ୟ ବ୍ରତ ଏତେକ କାଳ × ଙ୍କ ବସ
୩୪ । ବୃତ୍ତୀବାକ ୦୧୧

**ଲିପିର ସମୟ:**—ଲିପିରେ ନରସିଂହ ଦେବଙ୍କ ପ୍ରବର୍ଧମାନ ବିଜୟ ରାଜ୍ୟର ୨୨ ସଂବତ୍ କୃଷ୍ଣ ସପ୍ତମୀ ରବିବାରର ଉଲ୍ଲେଖ ଅଛି । ଗଙ୍ଗବଂଶରେ ୪ଜଣ ନରସିଂହ ରାଜତ୍ୱ କରିଥିଲେ—ଏଣୁ ଏହି ଲିପି କେଉଁ ରାଜାନରସିଂହଦେବଙ୍କ ସମୟରେ ଉତ୍କୀର୍ଣ୍ଣ ହୋଇଥିଲା ତାହା ଠିକ କରିବା ସହଜ ସାଧ୍ୟ ନୁହେଁ । ଚାରିଜଣଯାକ ନରସିଂହ ଜାମାଖ୍ୟ ଗଙ୍ଗନୃପତି ୨୨ ଅଙ୍କରୁ ଅଧିକ ବର୍ଷ ରାଜତ୍ୱ କରିଥିଲେ । ଓଡ଼ିଶାରେ ଅଙ୍କ ଗଣନାର ବିଶେଷତ୍ୱ ଅଛି । ଅଙ୍କରେ ଥିବା ସଂଖ୍ୟା ଓ ୧୦ ବ୍ୟତୀତ ଶୂନ୍ୟଯୁକ୍ତ ସଂଖ୍ୟା ଗଣିତ ହୁଏନାହିଁ, ଅର୍ଥାତ୍ ୧, ୬, ୧୬, ୨୦, ୨୬, ୩୦, ୩୬, ଇତ୍ୟାଦି ସଂଖ୍ୟା ପୂର୍ଣ୍ଣ ରାଜତ୍ୱ ଅଙ୍କରୁ ବାଦଯାଏ । ପ୍ରତ୍ୟେକ ଅଙ୍କ ସୁନିଆ ଦିନରୁ ଆରମ୍ଭ ହୁଏ । ସୁନିଆଁ ପରେ ବର୍ଷକ ମଧ୍ୟରେ ଜଣେ ରାଜାଙ୍କର ମୃତ୍ୟୁ ହେଲେ, ସେହିଦିନ ତାଙ୍କର ଅଙ୍କ ସରିଯାଏ ଓ ନୂତନ ରାଜାଙ୍କର ୨ୟ ଅଙ୍କ ଆରମ୍ଭ ହୋଇ ସୁନିଆଁ ପର୍ଯ୍ୟନ୍ତ ଚଳେ । ଏଣୁ ଏ ମୃତ ରାଜାଙ୍କର ଅଙ୍କ ଓ ନୂତନ ରାଜାଙ୍କ ଅଙ୍କ ଗୋଟିଏ ବର୍ଷ ମଧ୍ୟରେ ଚଳେ । ଏହି ହିସାବରେ ୨୨ ଅଙ୍କର ରାଜତ୍ୱ କାଳ ହେଉଛି ୧, ୬, ୧୬ ଓ ୨୦ ସଂଖ୍ୟା ହ୍ରାସ ବର୍ଷ ବା ୧୮ ବର୍ଷ । ଏହି ଗଣନା ଅନୁସାରେ—

(୧) ନରସିଂହ ୧ମଙ୍କ ୨୨ ଅଙ୍କ ଖ୍ରୀ ୧୨୫୬—୫୬
(୨) ନରସିଂହ ୨ୟଙ୍କ ,, ଖ୍ରୀ ୧୨୯୬—୯୬
(୩) ନରସିଂହ ୩ୟଙ୍କ ,, ଖ୍ରୀ ୧୩୪୫ – ୪୬ ଓ
(୪) ନରସିଂହ ୪ର୍ଥଙ୍କ ,, ଖ୍ରୀ ୧୩୯୫— ୯୬ହେବପରେ

୨୨ ଅଙ୍କର କାର୍ତ୍ତିକ କୃଷ୍ଣ ସପ୍ତମୀ ରବିବାର ନରସିଂହ ୧ମ ଓ ନରସିଂହ ୨ୟଙ୍କ ୨୨ ଅଙ୍କରେ Indian Ephimerish ପୁସ୍ତକର

ଗଣନା ଅନୁସାରେ ପଡ଼େ ନାହିଁ । କିନ୍ତୁ ଏହାହିଁ ନରସିଂହ ୩ୟଙ୍କ ୨୨ ଅଙ୍କରେ ଅକ୍‌ଟୋବର ତା ୮ ୧୩୪୭ ଓ ନରସିଂହ ୪ର୍ଥ ୨୨ଅଙ୍କରେ ସେପ୍‌ଟେମ୍ବର ତା ୯ ୧୩୯୬ରେ ପଡ଼ୁଅଛି । ଏଣୁ ଶିଳାଲିପିର ସମୟ ଏହି ଦୁଇଟି ଦିନରୁ ଗୋଟିଏ ହୋଇପାରେ । ନରସିଂହ ୩ୟଙ୍କ ସମୟରେ ମିଳୁଥିବା ଲିପିରେ ଓଡ଼ିଆ ଭାଷାର ବ୍ୟବହାର ଦେଖାଯାଏ ନାହିଁ । କିନ୍ତୁ ନରସିଂହ ୪ର୍ଥଙ୍କର ୧୩୯୫ରେ ପ୍ରଦତ୍ତ ପୁରୀର ଶଙ୍କରାନନ୍ଦ ମଠରେ ଥିବା ତମ୍ବାପଟାରେ ଓଡ଼ିଆ ଭାଷା ବ୍ୟବହୃତ ହୋଇଅଛି । ଏଣୁ ଆମର ମନେହୁଏ ଯେ ଏହି ଶିଳାଲିପିର ସମୟ ସେପ୍‌ଟେମ୍ବର ତା ୨୯ରଖ ୧୩୯୬ ।

**ଲିପିର ଭାଷା:**—ଲିପିରୁ ଭାଷାରୁ ଜଣାଯାଏ ଯେ ସେତେବେଳକୁ ଓଡ଼ିଆ ଭାଷା ପ୍ରାୟ ମୂର୍ତ୍ତିଙ୍କ ଆକାର ଧାରଣ କଲାଣି ।

ଲିପିର ବନାନ ସମସ୍ୟା—ଏହି ଲିପିରେ ପ୍ରକୃତ ଭାଷାର ବନାନ ସମର୍ଥନ ଦେଖାଯାଏ । ମୁଖରେ ଉଚ୍ଚାରିତ ଶବ୍ଦ ଅନୁସାରେ ବନାନ ଲିଖିତ ହୋଇଛି । ସଂସ୍କୃତ 'ସିଂହ' ଓଡ଼ିଆରେ 'ସିଙ୍ଘ' ଉଚ୍ଚାରିତ ହୋଇ ଏହି ଲିପିରେ ବ୍ୟବହୃତ ହୋଇଛି ।

(୨) ପରବର୍ତ୍ତୀ ବର୍ଣ୍ଣର 'ରେଫ' ଫଳା ପୂର୍ବବର୍ତ୍ତୀ ବର୍ଣ୍ଣରେ 'ର'କାର ହୋଇଅଛି—ପ୍ରବ୍ରଧମାନେ । କେତେକ ସ୍ଥଳରେ 'ରେଫ' ଫଳା ବ୍ୟବହୃତ ହୋଇନାହିଁ—ଯଥା କାତୀକ'

'୩) ହ୍ରସ୍ୱ 'ଇ' ଠାରେ ଦୀର୍ଘ'ଈ' ବ୍ୟବହାର ପ୍ରାୟ ସର୍ବତ୍ର ହୋଇଛି ।

(୪) ସେହିପରି ହ୍ରସ୍ୱ 'ଉ' ଠାରେ ଦୀର୍ଘ 'ଊ'ର ମଧ୍ୟ ବ୍ୟବହାର ଦେଖାଯାଏ ।

(୫) ଦୀର୍ଘ 'ଆ' ଠାରେ ହ୍ରସ୍ୱ 'ଅ'ର ବ୍ୟବହାର ମଧ୍ୟ ଦେଖାଯାଏ ଯଥା ମହାରାଜା—ମାହାରାଜା ।

(୬) ବର୍ଗ୍ୟ 'ଜ' ସ୍ଥଳରେ ଅନ୍ତସ୍ଥ୍ୟ 'ଯ'ର ବ୍ୟବହାର ଦେଖାଯାଏ ଯଥା : ରାଯେ ।

(୭) 'ଶ' ଓ 'ସ' ର ବ୍ୟବହାରରେ କୌଣସି ନିୟମ ପ୍ରତି-ପାଳିତ ହେଉଥିବା ମନେ ହୁଏନାହିଁ ।

(୮) ୧୮° 'ଶତେକ ଅମୀ' ରୂପେ ଓ 'ଅସୀଆ ସତକେ' ରୂପେ ବ୍ୟବହୃତ ହୋଇଅଛି । ଓଡ଼ିଆ ପଣକିଆରେ 'ଅଶୀଆ ଶତକ'ର ବ୍ୟବହାର ଥିଲା ।

(୯) 'ଉତ୍ତର' ସ୍ଥଳରେ 'ଉଟ' ବ୍ୟବହୃତ ହୋଇଅଛି ।

(୧୦) ଆଜ କାଲ 'ପୌର୍ଣ୍ଣମୀ'ର ବ୍ୟବହାର ହୁଏ । ମାତ୍ର ଲିପିରେ 'ପୌର୍ଣ୍ଣୀ' ବ୍ୟବହୃତ ହୋଇଛି ।

(୧୧) 'ଆପୂର୍ଣ୍ଣ' ଏହି ଲିପିରେ 'ଆଣ' ବା 'ଆଉଣ' ରୂପେ ବ୍ୟବହୃତ ଅଛି ।

ଅନ୍ୟାନ୍ୟ ଆଲୋଚନା :—

(କ) ଏହି ଲିପିରେ 'ତପରଜ' ଓ ତପଚକ୍ରବର୍ତ୍ତୀ' ବିଶେଷଣରୂପେ ବ୍ୟବହୃତ ହୋଇଛି । ଆମ୍ଭେମାନେ ମହାନ୍ 'ମହାରାଜ' ବ୍ୟବହାର କରୁ । ଧର୍ମାତ୍ମା ମାନଙ୍କୁ ରାଜକୀୟ ଉପାଧିରେ ଭୂଷିତ କରିବାର କାରଣ ସହଜରେ ଅନୁମିତ ହୋଉ ନାହିଁ ।

(ଖ) ଏଥିରେ 'ସ୍ଥାନାପତି'ର ବ୍ୟବହାର ଦେଖାଯାଏ । ଏହାର ପ୍ରକୃତ ଅର୍ଥ ମୁଁ ଠିକ କରି ପାରିନାହିଁ ।

(ଗ) ଏକାଦଶ ରୁଦ୍ର ଭିକ୍ଷା :- ଏକାଦଶ ରୁଦ୍ରଙ୍କ ନାମ ଯଥା ୧ । ଅଜ, ୨ । ଏକପାଦ, ୩ । ଅହିର୍ବୁଧ୍ନ, ୪ । ପିନାକୀ, ୫ । ଅପରାଜିତ, ୬ । ତ୍ର୍ୟମ୍ବକ; ୭ । ମହେଶ୍ୱର, ୮ । ବୃଷାକପି, ୯ । ଶମ୍ଭୁ, ୧୦ । ହର, ୧୧ । ଇଶ୍ୱର । ଏକାଦଶ ରୁଦ୍ର ଭିକ୍ଷାରୁ ଅର୍ଥ ବୋଧ ହୁଏ ଏକଦଶ ରୁଦ୍ରଙ୍କର ସେବା ନିମିତ୍ତ ଭିକ୍ଷା । ଏହି ଏକାଦଶ ରୁଦ୍ରଙ୍କର ପୂଜା ଓ ସେବା ବିଧାନ ବୁଝିବା ପାଇଁ ଚେଷ୍ଟା କରି ସଫଳ କାମ ହୋଇ ପାରି ନାହିଁ । ଏଥିରୁ ମନେ ହୁଏ ଯେ ଏହି ଭିକ୍ଷା ଶୈବ ସନ୍ୟାସୀ ମାନଙ୍କର କାର୍ଯ୍ୟ ପାଇଁ ଦିଆ ଯାଇଥିଲା । ଯେଉଁଠାରେ ଭୂମିଦାନ କରା ଯାଇଥିଲା, ତାହା ଚୋଡ଼ ଦେଶ, ପାଣ୍ଡ୍ୟ ଦେଶ ଓ କାଞ୍ଚି ଅଞ୍ଚଳରେ ଅବସ୍ଥିତ ଥିଲା ।

ଏଥିପାଇଁ ଏହା ଲିପିରେ ଓଡ଼ିଆ ଲିପି ସହିତ ତାମିଲ ଲିପି ବ୍ୟବହୃତ ହୋଇଅଛି ।

ଭୁବନେଶ୍ୱର ସ୍ଥିତ ପ୍ରାଚୀନ ମନ୍ଦିର ଗୁଡ଼ିକରେ ଲକୁଲୀଶ ମୂର୍ତ୍ତିରୁ ଅନୁମିତ ହୁଏ ଯେ ସେଠାରେ ପ୍ରଥମେ ପାଶୁପତ ଓ ଶୈବଧର୍ମ ପ୍ରଚଳିତ ହୋଇଥିଲା ଓ ସେ ଶୈବଧର୍ମର ସମୟ ଦଶମ ଶତାବ୍ଦିର ପୂର୍ବବର୍ତ୍ତୀ ବୋଲି ଯାଇପାରେ । କିନ୍ତୁ ଏହି ଲିପିରେ ମିଳୁଥିବା ଚତୁର୍ଦ୍ଦଶ ଶତାବ୍ଦିର ଶୈବଧର୍ମ ସ୍ୱତନ୍ତ୍ର ପରି ମନେ ହୁଏ । ଏହି ଶିବୋପାସନାର ମତ ଜାଣିବାର ସୁଯୋଗ ପାଇନାହିଁ ।

ଏହି ଲିପି ଉପରେ କେହି ଅଧିକ କିଛି ଆଲୋକପାତ କଲେ ଆମ୍ଭେମାନେ ଅନେକ କଥା ଜାଣି ପାରିବୁ ଓ ଏହି ଉଦ୍ଦେଶ୍ୟରେ ଏ ଲିପି ଉପରେ ଏ ପ୍ରବନ୍ଧ ଲିଖିତ ହୋଇଛି ।

———